

ସ୍ମୃତିରେ...

# କମ୍ରେଡ୍ ବିଶ୍ୱନାଥ ସାହୁ

କଃ ବିଶ୍ୱନାଥ ସାହୁ ସ୍ମୃତି କମିଟି, ଭୁବନେଶ୍ୱର

# ସ୍ମୃତିରେ ...



# କମ୍ରେଡ୍ ବିଶ୍ୱନାଥ ସାହୁ

**୧୨ ଜୁଲାଇ ୧୯୨୫** — **୧୮ ମାର୍ଚ୍ଚ ୨୦୧୬**

କଃ ବିଶ୍ୱନାଥ ସାହୁ ସ୍ମୃତି କମିଟି

ଭୁବନେଶ୍ୱର

# ସଂକ୍ଷେପରେ କମ୍ରେଡ୍ ବିଶ୍ୱନାଥ ସାହୁ

| | | |
|---|---|---|
| ଜନ୍ମ | : | ତା. ୧୨.୦୭.୧୯୨୫ |
| ସ୍ଥାନ | : | ବଡ଼କୁଶସ୍ଥଳୀ (ଗଞ୍ଜାମ), ଓଡ଼ିଶା |
| ପିତା | : | ଗୋପୀନାଥ ସାହୁ |
| ମାତା | : | ଇନ୍ଦୁମତି ସାହୁ |
| ସ୍ତ୍ରୀ | : | ସରୋଜିନୀ ସାହୁ, ଦୁଇପୁଅ, ଦୁଇ ଝିଅ |
| ଶିକ୍ଷା | : | ଗାଁ ବଡ଼କୁଶସ୍ଥଳୀରେ ପ୍ରାଥମିକ ଶିକ୍ଷା,<br>ନରସିଂହ ଦାଶ ଉଚ୍ଚ ବିଦ୍ୟାଳୟ, ପୁରୁଷୋତ୍ତମପୁରରେ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢ଼ା। ଖଲିକୋଟ କଲେଜ, ବ୍ରହ୍ମପୁରରେ ଆଇ.ଏ. |
| ଛାତ୍ର ସଙ୍ଗଠନ | : | ଉଚ୍ଚ ବିଦ୍ୟାଳୟରେ ପଢୁଥିବାବେଳେ ଅଖିଳ ଭାରତ ଛାତ୍ର ସଂଘର ଗଞ୍ଜାମ ଜିଲା ସମ୍ପାଦକ – ୧୯୪୩ ମସିହା |
| ରାଜନୀତି | : | ୧୯୪୬ ଜୁନ ୨ ତାରିଖରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି (ସି.ପି.ଆଇ) ସଭ୍ୟ<br>-ବଡ଼କୁଶସ୍ଥଳୀ ଗ୍ରାମ ପଂଚାୟତର ପ୍ରଥମ ସରପଂଚ ଭାବେ ତିନିଥର ନିର୍ବାଚିତ<br>–୧୯୫୮ ମସିହାରେ ସି.ପି.ଆଇ ଗଞ୍ଜାମ ଜିଲ୍ଲା ଶାଖାର ସମ୍ପାଦକ ଭାବେ ନିର୍ବାଚିତ;<br>-ଏକାଦିକ୍ରମେ ୨୪ବର୍ଷ ଧରି ପଦବୀରେ କାର୍ଯ୍ୟରତ।<br>-ରାଜ୍ୟ ପରିଷଦ ଓ କାର୍ଯ୍ୟକାରୀ କମିଟିର ସଭ୍ୟ<br>-ଅଖିଳ ଭାରତ କୃଷକ ସଭାର ଜାତୀୟ ପରିଷଦକୁ ନିର୍ବାଚିତ |
| କୃଷକ ସଙ୍ଗଠନ | : | ଅଖିଳ ଭାରତ କୃଷକ ସଭାର ଓଡ଼ିଶା ରାଜ୍ୟ ସଭାପତି ଭାବେ ନିର୍ବାଚିତ। ଏହାର ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ। |
| ବିଧାୟକ | : | ଓଡ଼ିଶା ବିଧାନସଭାକୁ ଛତ୍ରପୁର ନିର୍ବାଚନମଣ୍ଡଳୀର ପ୍ରାର୍ଥୀଭାବେ ନିର୍ବାଚିତ। ୧୯୭୭ରୁ ୧୯୮୦ ମସିହା ଓ ୧୯୮୦ରୁ ୧୯୮୫ ମସିହା ପର୍ଯ୍ୟନ୍ତ ବିଧାନସଭାର ସଭ୍ୟ ରହିଥିଲେ। |
| ବିଦେଶ ଭ୍ରମଣ | : | ୧୯୭୦ ମସିହାରେ ସୋଭିଏତ ରାଷ୍ଟ୍ରସଂଘ |
| ବନ୍ଦୀ ଜୀବନ | : | ୧୯୪୮ ମସିହାରେ ଅଟକ ଆଇନ ବଳରେ ଗିରଫ ଓ ବ୍ରହ୍ମପୁର କେନ୍ଦ୍ରୀୟ |

# ଏକ ବିଶାଳ ହୃଦୟର ଅଧିକାରୀ ଥିଲେ ସେ

ସୁଧୀର ପଟ୍ଟନାୟକ

ରାଜ୍ୟରେ ଛାତ୍ର ଆନ୍ଦୋଳନର ଅନ୍ୟତମ ବିନ୍ଧାଣୀ ବାମପନ୍ଥୀ ତଥା କୃଷକ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ତଥା ଛତ୍ରପୁର ବିଧାନସଭା ଆସନରୁ ୨ଥର ନିର୍ବାଚିତ ହୋଇ ଆସିଥିବା ପୂର୍ବତନ ବିଧାୟକ ସାଥି ବିଶ୍ୱନାଥ ସାହୁ ଆମ ଗହଣରେ ଆଉ ନାହାନ୍ତି । ରାଜନୈତିକ ଆଦର୍ଶ ତଥା ବିଚାର ଦୃଷ୍ଟିରୁ ସେ ନିଶ୍ଚିତ ଭାବେ ଜଣେ ନିଷ୍ଠାପର ବାମପନ୍ଥୀ ଥିଲେ । କିନ୍ତୁ ତାଙ୍କର ହୃଦୟ ଏତେ ବିଶାଳ ଥିଲା ଯେ ସଂକୀର୍ଣ୍ଣ ହେବା ପାଇଁ ସୁଯୋଗ ପାଇନଥିଲେ । ମନଟି ତାଙ୍କର ସଦା ଚଳଚଞ୍ଚଳ ରହୁଥିଲା । ହସଟି ଥିଲା ଆତ୍ମୀୟତାର ହସ, ସମସ୍ତଙ୍କୁ ଆପଣେଇ ନେବାର ହସ । ନିଜେ ୯୧ବର୍ଷର ହେବା ସତ୍ତ୍ୱେ ସାମ୍ନାରେ ଥିବା ୧୯ବର୍ଷର ଯୁବକଙ୍କୁ ପ୍ରଶ୍ନଟି ଆସୁଥିଲା, କେମିତି ଅଛରେ', କ'ଣ ଭଲ ଅଛ ? ଅର୍ଥାତ୍ ଏ ପ୍ରଶ୍ନ ତାଙ୍କୁ କିଏ ପଚାରୁ ଯେ 'ଆପଣ କେମିତି ଅଛନ୍ତି', ସେ ଅବସର ସେ କାହାକୁ ଦେଉ ନଥିଲେ । ସ୍ୱାଧୀନତା ପରବର୍ତ୍ତୀ ଅବସ୍ଥାରେ ଲୋକଙ୍କ ଅଭାବ, ଅସୁବିଧା, ଆବଶ୍ୟକତା ଇତ୍ୟାଦି ବହୁଗୁଣ ବଢ଼ିଯିବ ସେ ଜାଣିଥିଲେ । ସେଥିପାଇଁ ଯେଉଁ ସମୟରେ ଯିଏ ଯାହା ତାଙ୍କ ମାଧ୍ୟମରେ କରିବା ପାଇଁ ଚାହୁଁଥିଲେ ସେ ପଛାଉ ନଥିଲେ । ୯୦ବର୍ଷ ବୟସ ଯାଏଁ ବି ସେ ଗାଁଲୋକଙ୍କ ସମସ୍ୟା/ସ୍କୁଲ ସମସ୍ୟା ଓ ବିବିଧ ସମସ୍ୟା ନେଇ ଏକା ଏକା ସଚିବାଳୟ ଯାଇ ମନ୍ତ୍ରୀ ଓ ଅମଲାଙ୍କ ନିକଟରେ ପହଞ୍ଚି ଯାଉଥିଲେ । କାମରେ ସଫଳ ହେବା ଯାଏଁ ତାଙ୍କ ଉଦ୍ୟମରେ ଅଧାରୁ ଅବ୍ୟାହତ ନେଉନଥିଲେ । ରାଜନୈତିକ ଆଦର୍ଶବାଦ ମଣିଷର ବୁଝାମଣାକୁ ସ୍ୱଚ୍ଛ କରିବା ପରିବର୍ତ୍ତେ ଏଥିରେ ବିଶ୍ୱାସ କରୁଥିବା ଲୋକମାନଙ୍କୁ ଭୟଙ୍କର ଭାବେ ସଂକୀର୍ଣ୍ଣ କରିଚାଲିଥିବା ବେଳେ ବିଶ୍ୱନାଥବାବୁ ଥିଲେ ଏକ ବ୍ୟତିକ୍ରମ । ସମାଜବାଦ ସମ୍ଭବ କି ନୁହେଁ ବା କୃଷକ ଆନ୍ଦୋଳନ କେତେଦୂର କୃଷକକୁ ନ୍ୟାୟ ଦେଇପାରିବ; ଏଭଳି ପ୍ରଶ୍ନକୁ ସେ ମନଭିତରକୁ ନଆଣି ତାଙ୍କଦ୍ୱାରା ଯେତିକି କାମ ସମ୍ଭବ ହେଇପାରିବ ତାହା କରିଚାଲିଥିଲେ । ଏମିତିରେ ତ ମୁଖ୍ୟସ୍ରୋତର ବାମପନ୍ଥୀ ଆନ୍ଦୋଳନ ଭିତରେ ସଙ୍ଗଠିତ କ୍ଷେତ୍ରର ଶ୍ରମିକ ସଙ୍ଗଠନମାନେ ଗେହ୍ଲାପୁଅ ଏବଂ କୃଷକ ସଙ୍ଗଠନଗୁଡ଼ିକ ଅଲୋଡ଼ା, ଅଖୋଜା ରହିଆସିଛନ୍ତି । ତଥାପି ଏଭଳି ଏକ ପରିସ୍ଥିତିକୁ ଭ୍ରୂକ୍ଷେପ ନକରି ବିଶ୍ୱନାଥ ବାବୁ ଭାଗଚାଷୀର



ଅଧିକାର ପାଇଁ ଆରମ୍ଭରୁ ହିଁ ଉଦ୍ୟମ ଅବ୍ୟାହତ ରଖିଆସିଥିଲେ।

କୃଷକ ସଙ୍ଗଠନକୁ ମଜବୁତ୍ କରିବା ପାଇଁ ସେ ଜିଲ୍ଲାକୁ ଜିଲ୍ଲା ବସ୍‌ରେ ବସି ବୁଲୁଥିଲେ। କୌଣସି ସର୍ବଭାରତୀୟ ସ୍ତରର କୃଷକସଭା ବୈଠକକୁ ନଯାଇ ରହିପାରୁନଥିଲେ। ଶିକ୍ଷା କ୍ଷେତ୍ରରେ ତାଙ୍କର ଅବଦାନ ଛତ୍ରପୁର/ ରମ୍ଭା ଅଞ୍ଚଳରେ ଯେକୌଣସି ଜଣାଶୁଣା ଲୋକଙ୍କୁ ପଚାରିଲେ ସେ ଆପଣଙ୍କୁ କହି ଚାଲିଥିବେ। ସ୍କୁଲ-କଲେଜ ଖୋଲିବା ପାଇଁ ଯେତେବେଳେ ଅଗ୍ରସର ହେଉଥିଲେ, ଦଳମତ ନିର୍ବିଶେଷରେ ସେ ସମସ୍ତଙ୍କୁ ସହଯୋଗ ମାଗୁଥିଲେ। ଖୋର୍ଦ୍ଧାର ପ୍ରାଣନାଥ ମହାବିଦ୍ୟାଳୟ ପ୍ରତିଷ୍ଠା ବେଳେ ପ୍ରଥମ ଅବଦାନ ତାଙ୍କରି ମାଧ୍ୟମରେ ସଂଗୃହୀତ ହୋଇଥିଲା।



ପାଣି ପଞ୍ଚାୟତକୁ ନେଇ ଯେତେବେଳେ ରାଜେନ୍ଦ୍ର ଷଡ଼ଙ୍ଗୀଙ୍କ ନେତୃତ୍ୱରେ ଏକ ଅଭିଯାନ ଚାଲିଥିଲା, ଦିଗପହଣ୍ଡି ବ୍ଲକ୍‌ର ଏକ କୃଷକ ସଭାର ଅନ୍ୟତମ ଆୟୋଜକ ଥିଲେ ବିଶ୍ୱନାଥ ବାବୁ। ମତପାର୍ଥକ୍ୟ ସତ୍ତ୍ୱେ ସେ କୃଷକମାନଙ୍କ ପାଇଁ କାମକରିବା କ୍ଷେତ୍ରରେ ପ୍ରତିବନ୍ଧକ ହିସାବରେ ଛିଡ଼ାହେବା ପାଇଁ ଦେଇନାହାନ୍ତି। ଯେଉଁସବୁ କଷ୍ଟ ସ୍ୱୀକାର କରି ସେ ଛାତ୍ରସଂଘର ନେତୃତ୍ୱ ନେଇଥିଲେ, ତାହାର ଅନେକ ଉଦାହରଣ ତାଙ୍କ ସହ ଆଲୋଚନା ବେଳେ ମୁଁ ଜାଣିବାକୁ ପାଇଥିଲି। ଛାତ୍ରସଂଘ ସେତେବେଳେ ଜାତୀୟ ସମସ୍ୟାଗୁଡ଼ିକ ଉପରେ ସ୍ପଷ୍ଟ ମତ ରଖୁଥିଲା ଓ ଆନ୍ଦୋଳନରେ ମଧ୍ୟ ନେତୃତ୍ୱ ନେଉଥିଲା। ସ୍କୁଲରେ ପାଠ ପଢ଼ିବାବେଳେ ବି ସେ ଦୁର୍ଭିକ୍ଷ ପ୍ରପୀଡ଼ିତ ସହାନୁଭୂତି କରାଇ ଏବଂ ସେମାନଙ୍କ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଗୋଟିଏ ବେଳା ଖାଇ ଅନ୍ୟ ବେଳା ଖାଦ୍ୟ ସେହି ହା-ଅନ୍ନ ଚିତ୍କାର କରୁଥିବା ଲୋକମାନଙ୍କୁ ଦେବାପାଇଁ ନିଜ ସହପାଠୀମାନଙ୍କୁ ସଙ୍ଗଠିତ କରିଥିଲେ।

୧୯୯୪-୯୫ ମସିହାର କଥା। ଗୋପାଳପୁର ଟାଟାବିରୋଧୀ ଆନ୍ଦୋଳନ ବେଳେ, ନାରାୟଣ ରେଡ୍ଡୀଙ୍କ ଡାକରା ଓ ପ୍ରଫୁଲ୍ଲ ସାମନ୍ତରାଙ୍କ ଆହ୍ୱାନକ୍ରମେ ପ୍ରଦ୍ୟୁମ୍ନ ବଳ, ମନମୋହନ ଚୌଧୁରୀ, ଗଙ୍ଗାଧର ପାଣିଗ୍ରାହୀ, ଗୁରୁମହାନ୍ତି ଓ ବୀରେନ୍ଦ୍ର ନାୟକ, ପ୍ରଶାନ୍ତ ପଣ୍ଡା, ବିଶ୍ୱପ୍ରିୟ କାନୁନ୍‌ଗୋ ଇତ୍ୟାଦିଙ୍କ ସହ ମତେ ଯିବାକୁ ସୁଯୋଗ ମିଳିଥିଲା। ଆଉ କିଛି ଥର ପ୍ରଦ୍ୟୁମ୍ନ ବଳ ଓ ବୀରେନ୍ଦ୍ର ନାୟକଙ୍କ ସହ ମୁଁ ସେ ଅଞ୍ଚଳକୁ ଗସ୍ତରେ ଯାଇଥିଲି। ସେତେବେଳେ ବିଶ୍ୱନାଥ ବାବୁଙ୍କ ସଂସ୍ପର୍ଶରେ ମୁଁ ଆସିଥିଲି, ଆଲୋଚନା କରିଥିଲି ଏବଂ ପ୍ରେରଣା ବି ପାଇଥିଲି। ସେ କାହାରିକୁ ଅପେକ୍ଷା ନକରି ସବୁବେଳେ ଠିକଣା ଯାଗାରେ

ଆସି ପହଞ୍ଚି ଯାଉଥିଲେ।

କୃଷିସମସ୍ୟା ଉପରେ ରାଜ୍ୟସ୍ତରୀୟ କାର୍ଯ୍ୟକ୍ରମ ଗୁଡ଼ିକରେ ଏକାଠି ହେବାର ସୁଯୋଗ ମଧ୍ୟ ମିଳିଥିଲା। ବେଶୀ ନିକଟତର ହୋଇଥିଲି ମୋର ସାଥୀ ତଥା ସମଦୃଷ୍ଟି ପାକ୍ଷିକ ପତ୍ରିକାର କାର୍ଯ୍ୟନିର୍ବାହୀ ସମ୍ପାଦକ ବିଘ୍ନେଶ୍ୱରଙ୍କ ଯୋଗୁଁ। ବିଘ୍ନେଶ୍ୱର ବିଶ୍ୱନାଥବାବୁଙ୍କ ପୁତ୍ର। ନଜାଣିଥିବା ଲୋକକୁ ସେ ପରିଚୟର ସୁରାକ ବି ମିଳିବନି। ଉଭୟେ କେହି କାହାର ପରିଚୟ ଦରକାର ନପଡ଼ିଲେ ଦିଅନ୍ତି ନାହିଁ। 'ସମଦୃଷ୍ଟି'କୁ ଦୀର୍ଘାୟୁ କରିବା ପାଇଁ ସବୁବେଳେ ତାଙ୍କର ପ୍ରେରଣା ଥାଏ।

ସେ ଜଣେ ନିଆରା ବାମପନ୍ଥୀ ଯେ ଆମର ସ୍ୱଷ୍ଟ ଭିନ୍ନମତଗୁଡ଼ିକୁ ସମ୍ମାନ ଦେଉଥିଲେ ଏବଂ କେବେ ବି ପ୍ରଭାବିତ କରିବାପାଇଁ ଚେଷ୍ଟା କରୁନଥିଲେ। ସାରାଜୀବନ ଲୋକଙ୍କ ପାଇଁ ବିଶ୍ୱନାଥ ପରିବାର କାମ କରି ଓ ତ୍ୟାଗପୁତ ଜୀବନ ଅବଲମ୍ବନ କରି, ଶ୍ରୀ ତୁଷାରକାନ୍ତଙ୍କ ଭାଷାରେ ୮୦ଏକର ଜମି ମାଲିକରୁ ମାତ୍ର ୨ଏକର ଜମିକୁ ଖସି ଆସିଥିଲେ। ତଥାପି ନିଜ ଏମ୍.ଏଲ୍.ଏ. ପେନ୍‌ସନ୍ ପାଣ୍ଠିରୁ ନିଜ ଦଳ ଭାରତୀୟ କମ୍ୟୁନିଷ୍ଟ ପାର୍ଟିକୁ ମାସିକ ଲେଭି ଦେଉଥିଲେ। ଅନେକ ଅସୁବିଧା ସତ୍ତ୍ୱେ 'ସମଦୃଷ୍ଟି'କୁ ମଧ୍ୟ କିଛି ସେହି ପେନ୍‌ସନ୍ ପଇସାରୁ ଦାନ କରିଥିଲେ। ସେହି ଅର୍ଥରେ ଦିନେ 'ଗ୍ରାମୀଣ ସମଦୃଷ୍ଟି' ଆତ୍ମପ୍ରକାଶ କରିଥିଲା।

ଜୀବନର ଶେଷ କିଛିମାସ ଓ କିଛି ଦିନ ସେ ଭୁବନେଶ୍ୱରର ନାବାର୍ଡ଼ କଲୋନୀସ୍ଥିତ ନିଜ ଝିଅ ରୀନା, ଜ୍ୱାଇଁ ଶଶାଙ୍କ ବାବୁ, ନାତି ଓ ନାତୁଣୀଙ୍କ ଗହଣରେ ଯତ୍ନର ସହ କଟାଇଥିଲେ। ମନଟା ସବୁବେଳେ ଗାଁ'ରେ ଥିଲେ ବି ପୁଅ ବିଘ୍ନେଶ୍ୱର ଓ ଝିଅ ରୀନା ଓ ପାଣିଗ୍ରାହୀ ବାବୁଙ୍କର ସେବା ଓ ଯତ୍ନ ଭିତରେ ସେ ଗାଁ'ର ନରହିବାର କଷ୍ଟକୁ ଭୁଲିଯାଉଥିଲେ। ଡାକ୍ତରମାନଙ୍କ ଭୁଲ୍ ଅସ୍ତ୍ରୋପଚାର ଯୋଗୁଁ ଅନେକ କଷ୍ଟ ପାଉଥିଲେ ବି, ସେ ତାକୁ ଗୁରୁତ୍ୱ ଦେଉନଥିଲେ। ଅନେକ ଆପୋଷ ଆଲୋଚନା ଭିତରେ ଯେଉଁ ଅନୁଭୂତିର କାହାଣୀ ସବୁ ସେ କହିଥିଲେ ତାକୁ ନେଇ ଏକ ଭିଡ଼ିଓ ସାକ୍ଷାତକାର ପ୍ରସ୍ତୁତ କରିବା ପାଇଁ ମନ ବଳାଇଥିଲି। ସେ କହିଥିଲେ ଟିକିଏ ଭଲ ଲାଗିଲେ ସାକ୍ଷାତକାରଟିକୁ ରେକର୍ଡ଼ କରିବା। କିନ୍ତୁ ତାହା ହୋଇପାରିଲା ନାହିଁ।

ବିଶ୍ୱନାଥ ବାବୁଙ୍କ ଅବର୍ତ୍ତମାନରେ ତାଙ୍କ ସ୍ମୃତିରେ ଆମେ କେତୋଟି କାମ କରିବୁ ନିଶ୍ଚୟ। ଯେଉଁ 'ଗ୍ରାମୀଣ ସମଦୃଷ୍ଟି'ର ଆତ୍ମପ୍ରକାଶ ପାଇଁ ତାଙ୍କର ଆର୍ଥିକ ସହଯୋଗ କାମରେ ଲାଗିଥିଲୁ। ସେହି ମାସିକ ପତ୍ରିକାଟି ପୁଣିଥରେ ଆତ୍ମପ୍ରକାଶ ପାଇବ। ଆସନ୍ତା ମାର୍ଚ୍ଚ ୧୮, ୨୦୧୭ ସୁଦ୍ଧା ତାଙ୍କ ଉପରେ ଏକ ଭିଡ଼ିଓ ଚିତ୍ର ମଧ୍ୟ ପ୍ରସ୍ତୁତ ହେବ। ତାଙ୍କ ସ୍ମୃତିରେ ପ୍ରକାଶ ପାଇଥିବା ଶ୍ରଦ୍ଧାଞ୍ଜଳିରୁ କେତୋଟି ଲେଖା ଏହି ସଂଖ୍ୟାରେ ସ୍ଥାନିତ କରାଯାଇଛି। ବିଶ୍ୱନାଥ ବାବୁଙ୍କୁ ଜାଣିବା ଓ ବଝିବା ପାଇଁ ଯେଉଁ ପାଠକମାନେ ସୁଯୋଗ ପାଇନଥିବେ ଖାସ୍ ସେମାନଙ୍କ ପାଇଁ ଆମ ପତ୍ରିକାରେ ସ୍ଥାନ ପାଇଥିବା ଗୋଟିଏ ଲେଖାକୁ ପ୍ରକାଶ କରାଗଲା। ପୁଣିଥରେ ଓଡ଼ିଶା ମାଟିର ଏହି ସୁଯୋଗ୍ୟ, ଦରଦୀ, ବିଚାରଶୀଳ ତଥା ମଣିଷକୁ ଭଲପାଉଥିବା ମହାନ୍ ହୃଦୟର ମଣିଷଙ୍କ ସ୍ମୃତିରେ 'ସମଦୃଷ୍ଟି ପରିବାର' ତରଫରୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ।

*ସମ୍ପାଦକ, ସମଦୃଷ୍ଟି*

✦

# ମୋର ସହଯୋଦ୍ଧା ବିଶ୍ୱନାଥ ସାହୁ

ସୋମନାଥ ପାତ୍ର

ବିଶ୍ୱଶାନ୍ତି, ବିଶ୍ୱ ମୁକ୍ତି, ବିଶ୍ୱମୈତ୍ରୀ, ଆନ୍ତର୍ଜାତିକ ମାର୍କ୍ସବାଦୀ ଆଦର୍ଶରେ ବ୍ରତୀ କ୍ରାନ୍ତିକାରୀ ଯାତ୍ରୀ କୃଷକ ଆନ୍ଦୋଳନର ଦକ୍ଷ ସଂଗ୍ରାମୀ ନେତା, ସଂଗ୍ରାମ ଭୂମି ଗଞ୍ଜାମ ଜିଲ୍ଲାର ବରପୁତ୍ର ସାଥୀ ବିଶ୍ୱନାଥ ସାହୁ ଆଜି ଆଉ ବିଶ୍ୱ ଜନତାଙ୍କ ସଙ୍ଗରେ ନାହାନ୍ତି। ତାଙ୍କର ଶେଷ ନିଶ୍ୱାସ ଚାଲିଯାଇଛି। ସେ ଆଉ ଫେରିବେ ନାହିଁ। ସେ ସିନା ଯାଇଛି, ତା' କୀର୍ତ୍ତି ରହିଛି। ସଂଗ୍ରାମୀ ଗଞ୍ଜାମ ଜିଲ୍ଲା ରାଜ୍ୟର ବାମପନ୍ଥୀ ଆନ୍ଦୋଳନକୁ। ବିଶେଷକରି କମ୍ୟୁନିଷ୍ଟ ଆନ୍ଦୋଳନକୁ ପରିଚାଳନା କରିବା ଓ ନେତୃତ୍ୱ ଦେବାପାଇଁ ଯେଉଁ ସଂଗ୍ରାମୀ ସାଥୀମାନଙ୍କୁ ଜନ୍ମ ଦେଇଥିଲା, ସେମାନଙ୍କ ମଧ୍ୟରୁ ଅନେକ ଏଥିପୂର୍ବରୁ ଚାଲିଯାଇଥିଲେ। ଏବେ ସାଥୀ ବିଶ୍ୱନାଥ ସାହୁ ଚାଲିଗଲେ। ଜନ୍ମ ହିଁ ସତ୍ୟ, ମୃତ୍ୟୁ ହିଁ ସତ୍ୟ। ଜନ୍ମ ଥିଲେ ମୃତ୍ୟୁ ରହିଛି। କିଏ ଅଳ୍ପାୟୁ, ତ' କିଏ ଦୀର୍ଘାୟୁ। ଓଡ଼ିଶାରେ କମ୍ୟୁନିଷ୍ଟ ପାଟିରେ ପ୍ରତିଷ୍ଠାତା ଓ ପ୍ରଥମ ସମ୍ପାଦକ ସାଥୀ ଭଗବତୀଚରଣ ପାଣିଗ୍ରାହୀ ଥିଲେ ଅଳ୍ପାୟୁ। ମାତ୍ର ପଞ୍ଚତିରିଶ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା। ସାଥୀ ବିଶ୍ୱନାଥଙ୍କର ମୃତ୍ୟୁବେଳକୁ ତାଙ୍କର ବୟସ ହୋଇଥିଲା ଏକାନବେ ବର୍ଷ। ଶତାୟୁ ହେବାର ସମସ୍ତଙ୍କର କାମନା ଥିଲା କିନ୍ତୁ ତାହା ସମ୍ଭବ ହେଲାନାହିଁ। କର୍କଟ ରୋଗରେ ପୀଡ଼ିତ ହୋଇ ସେହି ରୋଗରେ ମୃତ୍ୟୁବରଣ କଲେ।

ରୋଗ ଶଯ୍ୟାରେ ପଡ଼ିଥିବାବେଳେ ମୁଁ ତାଙ୍କୁ ଚିକିତ୍ସା କେନ୍ଦ୍ରରେ ଭେଟିଥିଲି। ଆଶା କରୁଥିଲି ସେ ଶୀଘ୍ର ସୁସ୍ଥ ହୋଇ ଫେରିବେ। କିନ୍ତୁ ତାହା ହେଲାନାହିଁ। ସେ ଆମ ସମସ୍ତଙ୍କୁ ଛାଡ଼ି ଚାଲିଗଲେ। ତାଙ୍କ ମୋ ମଧ୍ୟରେ ସମ୍ପର୍କ ଖୁବ୍ ସୁଦୃଢ଼ ଥିଲା। ଉଭୟଙ୍କ ମଧ୍ୟରେ ବନ୍ଧୁତା ଓ ମିତ୍ରତା ସୃଷ୍ଟି ହୋଇଥିଲା ସଂଗ୍ରାମର ମାଧ୍ୟମ ମାର୍କ୍ସବାଦ ଆଦର୍ଶ ଭିତ୍ତିରେ ଓ କୃଷକ ଆନ୍ଦୋଳନ ଜରିଆରେ। ତାଙ୍କର ବିୟୋଗ ମୋ ମନରେ ଯେପରି ଦାରୁଣ ଆଘାତ ଆଣିଛି ସେହିପରି ଏକ ଦୁର୍ବଳତା




ସ୍ମୃତିରେ ...କମ୍ରେଡ୍ ବିଶ୍ୱନାଥ ସାହୁ

ସୃଷ୍ଟି କରିଛି । ଭାବୁଛି ମୋ ଦିନକାଳ ପାଖେଇ ଆସିଲା । ଜଣଙ୍କ ପରେ ଜଣେ ସାଥୀ ତ ବିଦାୟ ନେଇ ଚାଲିଯାଉଛନ୍ତି, ମୁଁ ରହିବି କାହିଁକି ? ତେଣୁ ବେଗି ବେଗି କାମନା ଥିବା କାମ ଛିଣ୍ଡାଇବାକୁ ମନରେ ବ୍ୟାକୁଳତା ଆସିଛି । 'କିଏ ଜାଣେ କାହାର ଆଜି ମୃତ୍ୟୁ କାଳ ହୋଇଯିବ ଉପସ୍ଥିତ ।'

ସାଥୀ ବିଶ୍ୱନାଥ ଥିଲେ ଗଞ୍ଜାମ ଜିଲ୍ଲାର ଜଣେ ଜନପ୍ରିୟ ନେତା, ଛାତ୍ର ଜୀବନରୁ ସେ ବାମପନ୍ଥୀ ଛାତ୍ର ଆନ୍ଦୋଳନ ସହିତ ଜଡ଼ିତ ରହି ପରବର୍ତ୍ତୀ ସାଧାରଣ କର୍ମକ୍ଷେତ୍ରକୁ ଓହ୍ଲାଇ ଆସିଥିଲେ । ଜିଲ୍ଲାସ୍ତରରୁ ସେ ରାଜ୍ୟସ୍ତରର ନେତୃତ୍ୱ କ୍ଷେତ୍ରକୁ ଆସିପାରିଥିଲେ । ସେ ଦୀର୍ଘଦିନ ଧରି ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିରେ ସମ୍ପାଦକ ଥିଲେ । ସେହି ସମୟରେ ସେ ଗଞ୍ଜାମ ଜିଲ୍ଲା ବିଭିନ୍ନ ଅଞ୍ଚଳ ଗସ୍ତକରି ବିଭିନ୍ନ ଲୋକଙ୍କ ସହିତ ପରିଚିତଥିଲେ ଓ ସେମାନଙ୍କ ସହିତ ଯୋଗାଯୋଗ ପ୍ରତିଷ୍ଠା କରିଥିଲେ । ଗଞ୍ଜାମ ଜିଲ୍ଲାର କୃଷକ ଆନ୍ଦୋଳନର ସେ ଥିଲେ ଅନ୍ୟତମ ନେତା । ତାଙ୍କର କର୍ମଦକ୍ଷତା ଯୋଗୁଁ ସେ ରାଜ୍ୟ କମ୍ୟୁନିଷ୍ଟ ପାର୍ଟି ଓ ରାଜ୍ୟ କୃଷକ ସଭାର ନେତୃତ୍ୱକୁ ଆସିପାରିଥିଲେ । ସେ ବହୁଦିନ ଧରି ରାଜ୍ୟ କୃଷକସଭାର ସମ୍ପାଦକ/ ସଭାପତି ଓ ଜାତୀୟ ପରିଷଦର ସଭ୍ୟ ଥିଲେ ।



ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ଓ ଏକତ୍ର କାମ କରିବାର ସୁଯୋଗ ମିଳିଥିଲା, ଏକ ନିର୍ବାଚନ ସଂଗ୍ରାମ ସମୟରେ । ବିନାୟକ ଆଚାର୍ଯ୍ୟ ଯେତେବେଳେ କମ୍ୟୁନିଷ୍ଟ ପାର୍ଟି ଟିକଟରେ ବିଧାନସଭାକୁ ପ୍ରାର୍ଥୀ ହୋଇଥିଲେ । ମୁଁ ସେହି ସମୟରେ ପାର୍ଟି ତରଫରୁ ତାଙ୍କର ପ୍ରଚାର ପାଇଁ ଗଞ୍ଜାମ ଜିଲ୍ଲାକୁ ଯାଇଥିଲି । ସେହିଠାରେ ତାଙ୍କ ସହିତ ସାକ୍ଷାତ ହୋଇଥିଲା । ସେହିଦିନଠାରୁ ତାଙ୍କ ମୋ ମଧ୍ୟରେ ସମ୍ପର୍କ ଅତୁଟ ରହିଥିଲା । ସେ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଓ ମୁଁ ପୁରୀ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଭାବେ ରହିଥିବା ସମୟରେ ଉଭୟଙ୍କ ମଧ୍ୟରେ ଆଦର୍ଶଗତ ଭାବର ବିନିମୟ ଆମର ବନ୍ଧୁତାକୁ ସୁଦୃଢ଼ କରାଇଥିଲା । ବ୍ୟକ୍ତିଗତ ଭାବେ ସାଥୀ ସୁଲଭଭାବ ଏପରି ବୃଦ୍ଧି ପାଇଥିଲା ଯେ ଉଭୟଙ୍କ ମଧ୍ୟରେ କିଛିଦିନ ସାକ୍ଷାତର ଅଭାବହେଲେ ଉଭୟ ଉଭୟଙ୍କୁ ଭେଟିବା ପାଇଁ ମନରେ ବ୍ୟାକୁଳତା ପ୍ରକାଶ ପାଉଥିଲା, ଫୋନ୍ ଜରିଆରେ ଭାବ ବିନିମୟ ଘଟାଇ ସନ୍ତୋଷ ଲାଭ କରୁଥିଲୁ । ନିଜର କର୍ମଦକ୍ଷତା ଓ ଜନପ୍ରିୟତା ଯୋଗୁଁ ସେ ଗଞ୍ଜାମ ଜିଲ୍ଲାର ଛତ୍ରପୁର ନିର୍ବାଚନ ମଣ୍ଡଳୀରୁ ଦକ୍ଷ ବିଧାୟକ ଭାବେ ତାଙ୍କର ସୁନାମ ଥିଲା । ବିରୋଧୀ ରାଜନୈତିକ ବିଧାୟକ ଓ ନେତାମାନେ ମଧ୍ୟ ତାଙ୍କୁ ସମ୍ମାନ ଦେଉଥିଲେ ।

ଚମ୍ପାଖଣ୍ଡି ଅଞ୍ଚଳରେ ତାଙ୍କ ଉଦ୍ୟମରେ ଏକ ହାଇସ୍କୁଲ ପ୍ରତିଷ୍ଠା ହୋଇଥିଲା । ବହୁ ଜନମଙ୍ଗଳ କାର୍ଯ୍ୟ ଗଞ୍ଜାମ ଜିଲ୍ଲାରେ ତାଙ୍କ ଉଦ୍ୟମରେ ହୋଇଛି । ତାଙ୍କ ମୃତ୍ୟୁ ମୋ ମନରେ ଯେପରି ଦୁଃଖ ଦେଇଛି ଅନ୍ୟମାନଙ୍କ ମନରେ ମଧ୍ୟ ସେହିପରି ଦୁଃଖ ଦେଇଛି, ଗୋପବନ୍ଧୁଙ୍କ ଭାଷାରେ - ମନୁଷ୍ୟ ଜୀବନ ନୁହଁଇ କେବଳ ବର୍ଷ, ମାସ, ଦିନ, ଦଣ୍ଡ । କର୍ମେ ଯିଏ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ । ଏହି ମାନଦଣ୍ଡରେ ସାଥୀ ବିଶ୍ୱନାଥ ଚିରସ୍ମରଣୀୟ, ଚିର ନମସ୍ୟ, ମୃତ୍ୟୁବେଳକୁ ସେ ରାଜ୍ୟ ପାର୍ଟିର କଣ୍ଟ୍ରୋଲ କମିଶନ ଚେୟାରମ୍ୟାନ ଥିଲେ । ସାଥୀ ବିଶ୍ୱନାଥ ଅମର ରହେ ।

*ସାଥୀ ଓ ସହଯୋଦ୍ଧା*



# ବିଶ୍ୱନାଥ ସାହୁ : ଏକ ସମର୍ପିତ କମ୍ୟୁନିଷ୍ଟ

ରାମକୃଷ୍ଣ ପଣ୍ଡା

ଚାଳିଶ ଦଶକର କଥା, ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀଆନ୍ଦୋଳନ ତୀବ୍ର ରୂପ ଧାରଣ କରିଥାଏ। ଯୁବ-ଛାତ୍ର ଆନ୍ଦୋଳନକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ସାମ୍ରାଜ୍ୟବାଦ ବିରୋଧୀ ଏବଂ ସମାଜବାଦର ସ୍ୱପ୍ନରେ ବିଭୋର ଭଗତ ସିଂ ଓ ସାଥୀମାନଙ୍କୁ ଦିଆଯାଇଥିବା ଫାସି ଓ ଜେଲଦଣ୍ଡ ଭାରତବର୍ଷର ଛାତ୍ର ଆନ୍ଦୋଳନକୁ ନିର୍ବାପିତ କରିବା ବଦଳରେ ଅଧିକ ପ୍ରଜ୍ୱଳିତ କରୁଥାଏ। ୧୯୩୯ ମସିହାରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମର ଅଗ୍ନିଗର୍ଭରୁ ଅଖିଳ ଭାରତ ଛାତ୍ରସଂଘ (ଏ.ଆଇ.ଏସ୍.ଏଫ୍) ଜନ୍ମ ନେଇ ସାରିଥାଏ। ୧୯୩୯ରୁ ଆରମ୍ଭ ହୋଇଥିବା ଦ୍ୱିତୀୟ ବିଶ୍ୱଯୁଦ୍ଧ, ହିଟଲର୍‌ର ସୋଭିଏତ ଆକ୍ରମଣ ପରେ ଜନଯୁଦ୍ଧର ରୂପ ନେଇଥାଏ। ସାରା ବିଶ୍ୱ ଅପେକ୍ଷା କରିଥାଏ ହିଟଲର ଓ ଫାସିବାଦର ପରାଜୟକୁ ସେତେବେଳର ଛାତ୍ର ନେତା ପ୍ରଖ୍ୟାତ କବି ସଚ୍ଚି ରାଉତରାଏଙ୍କ ଭାଷାରେ 'କହିଛି ଷ୍ଟାଲିନ୍...

*ଏପ୍ରିଲ ପଚିଶ ଆଗୁ ଲାଲସେନା ଘେରିବେ ବର୍ଲିନ୍!*
*ଷ୍ଟାଲିନ୍‌ର କଥାକେବେ ହୁଏନାହିଁ ମିଛ,*
*ଦୁନିଆର ପଞ୍ଜିକାର ଏକତା ତ ଅଙ୍ଗେ ନିଭେଇଛ!!*
*ନୁହେଁ ଏହା ତମ ଆମ କଥା*
*ଷ୍ଟାଲିନ୍‌ର କଣ୍ଠେ ଏହା କହିଅଛି ବିଶ୍ୱର ଜନତା'!!*

୯ମଇ ୧୯୪୫ ସୋଭିଏତ ଲାଲସେନା ଫାସିବାଦି ହିଟଲରକୁ ପରାଜିତ କରେ। ସାରା ପୃଥିବୀର ଶାନ୍ତିକାମୀ ଶ୍ରମଜୀବୀ ମଣିଷ ସହ ତାଳ ଦେଇ ଆମଦେଶର ଛାତ୍ର ସମାଜ ଫାସିବାଦ ଉପରେ ବିଜୟର ଉତ୍ସବ ପାଳନ କରିବା ସହ, ବ୍ରିଟିଶ ସାମ୍ରାଜ୍ୟବାଦକୁ ଏ ଦେଶରୁ ତଡ଼ିବା ପାଇଁ ଛାତ୍ର ଆନ୍ଦୋଳନର ଜୁଆର ସୃଷ୍ଟି ହୁଏ। ସେତିକିବେଳେ ଆରମ୍ଭ ହୁଏ ଆଇ.ଏନ୍.ଏ.ର ତିନି ମହାରଥୀ ସେହଗଲ, ଧିଲନ୍ ଓ ସାହାନଓ୍ୱାଜ୍ ଖାନ୍‌ଙ୍କ ବିଚାର ସାରାଦେଶର ଛାତ୍ର ସମାଜ ଏ.ଆଇ.ଏସ୍.ଏଫ୍‌ର ଆହ୍ୱାନରେ ପ୍ରତିବାଦ ମୁଖର। ସମସ୍ତ ପ୍ରମୁଖ ଶିକ୍ଷାନୁଷ୍ଠାନମାନଙ୍କରୁ ୟୁନିୟନ୍ ଜ୍ୟାକ୍ ହଟାଇ ତ୍ରିରଙ୍ଗା ଉତ୍ତୋଳନ କରିବା ଓ ଆଇ.ଏନ୍.ଏର ତିନି ସେନାଧକ୍ଷଙ୍କୁ ମୁକ୍ତି ଦାବିରେ ଆନ୍ଦୋଳନର ନିଆଁ ସାରାଦେଶକୁ ପ୍ରସାରିତ ହୁଏ। ଓଡ଼ିଶାରେ ମଧ୍ୟ ଏହି ଛାତ୍ର ଆନ୍ଦୋଳନ ଅତି ତୀବ୍ରହୋଇ ରେଭେନ୍ସା ଓ ଖଲ୍ଲିକୋଟ ମହାବିଦ୍ୟାଳୟର ସୀମା ଟପି ବିଭିନ୍ନ ସ୍କୁଲକୁ ପ୍ରସାରିତ ହୁଏ। ଦେଶପ୍ରେମର ଉନ୍ମାଦନା ସୃଷ୍ଟି କରେ ଯୁବପିଢ଼ି ମଧ୍ୟରେ। ସେହି ସମୟରେ ଗଞ୍ଜାମ ଜିଲ୍ଲା ପୁରୁଷୋତ୍ତମପୁର ନରସିଂହ ଦାସ ଉଚ୍ଚବିଦ୍ୟାଳୟରେ ଅଧ୍ୟୟନରତ ବଡ଼କୁଶସ୍ଥଳୀର ବିଶ୍ୱନାଥ ସାହୁ ଯୋଗଦିଅନ୍ତି ଛାତ୍ରସଂଘରେ। ୧୯୪୫ ମସିହାରେ ସ୍କୁଲ ଛାତ୍ର ବିଶ୍ୱନାଥ ସାହୁ ସଂକଳ୍ପ ନିଅନ୍ତି ସାମ୍ରାଜ୍ୟବାଦକୁ କବର ଦେଇ ଏକ ସମାଜବାଦୀ ଭାରତବର୍ଷ ପ୍ରତିଷ୍ଠା କରିବାକୁ। ୧୯୪୬ରେ ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ଗ୍ରହଣ କରନ୍ତି। ବିଶ୍ୱନାଥ ନେତୃତ୍ୱ ନିଅନ୍ତି ଛାତ୍ର ଆନ୍ଦୋଳନର, ଗଞ୍ଜାମ ଜିଲ୍ଲା ସହସମ୍ପାଦକରୁ ପୁଣି ସମ୍ପାଦକ ଦାୟିତ୍ୱ ନିଅନ୍ତି। ଏ.ଆଇ.ଏସ୍.ଏଫ୍‌ର ଓଡ଼ିଶା ରାଜ୍ୟ ପ୍ରତିନିଧିଭାବେ ଅନ୍ୟମାନଙ୍କ ସହ ସେ ପହଞ୍ଚନ୍ତି ବମ୍ବେ ୧୧ତମ ଜାତୀୟ ସମ୍ମିଳନୀରେ ଯୋଗ ଦେବାପାଇଁ। ଏ.ଆଇ.ଏସ୍.ଏଫ୍. ବ୍ରିଟିଶ ସାମ୍ରାଜ୍ୟବାଦ କବଳରୁ ମୁକ୍ତ ନବଗଠିତ ସ୍ୱାଧୀନ ଭାରତବର୍ଷର ସମ୍ବିଧାନକୁ ଗ୍ରହଣକଲେ ମଧ୍ୟ ସମ୍ବିଧାନ ମଧ୍ୟରେ ୨୧ ପରିବର୍ତ୍ତେ ୧୮ବର୍ଷରେ ଭୋଟଦାନର ଅଧିକାର। ଶିକ୍ଷା ଓ ନିଯୁକ୍ତିକୁ ମୌଳିକ ଅଧିକାରଭୁକ୍ତ କରିବା। ସାମାଜିକ ଓ ଅର୍ଥନୈତିକ ସମାନତାର ଦାବିରେ ସଂଗ୍ରାମକୁ ତେଜିୟାନ

କରୁଥାଏ। ମୋରାରଜୀ ଦେଶାଇ ନେତୃତ୍ୱାଧୀନ ବମ୍ବେ ସରକାର ସମ୍ମିଳନୀକୁ ଅନୁମତି ଦେଲେ ନାହିଁ। ୨୬ ଡିସେମ୍ବରରୁ ସମ୍ମିଳନୀ ଲୁକ୍କାୟିତ ଭାବେ ଆରମ୍ଭ ହେଲା। ୨୮ ଡିସେମ୍ବର ଦିନ ଏ.ଆଇ.ଏସ୍.ଏଫ୍. ନିଷ୍ପତ୍ତି ନେଲା। ସରକାରଙ୍କ ଅନୁମତି ବିନା ଖୋଲା ଅଧିବେଶନ ଓ ଶୋଭାଯାତ୍ରା କରିବା ପାଇଁ। ଶୋଭାଯାତ୍ରା ଆରମ୍ଭ ହେଲା। ହଜାର ହଜାର ଛାତ୍ରନେତାଙ୍କ ସହ ଶୋଭାଯାତ୍ରାରେ ଯୋଗଦେଲେ ବିଶ୍ୱନାଥଙ୍କ ସହ ଅନ୍ୟ ଓଡ଼ିଶା ପ୍ରତିନିଧି। ଶୋଭାଯାତ୍ରାରୁ ଉପରେ ପୋଲିସର ଲାଠି ବର୍ଷା, ବନ୍ଧୁକର ଗର୍ଜନ, ନିଖୋଜ ହେଲେ ଅନେକ ଛାତ୍ରନେତା। ଶହ ଶହ ଛାତ୍ରନେତା ଗୁରୁତର ଭାବେ ବିଭିନ୍ନ ହସ୍ପିଟାଲରେ ପହଞ୍ଚିଲେ ମିଳିଲେନି ବିଶ୍ୱନାଥ ସାହୁ। ସାଥୀମାନେ ବିୟୋଗରେ ଦୁଃଖକୁ ହୃଦୟରେ ନେଇ ଫେରିଲେ ଓଡ଼ିଶା। ଛାତ୍ର ଶୋଭାଯାତ୍ରା ଉପରେ ଲାଠିମାଡ଼ ବିରୋଧରେ ଦେଶବ୍ୟାପୀ ଆରମ୍ଭ ହେଲା ପ୍ରତିବାଦ। ୯ଜାନୁଆରୀ ୧୯୪୮ରେ ବମ୍ବେରେ ହେଲା ବିଶାଳ ପ୍ରଦର୍ଶନ। ବିଶ୍ୱନାଥ ସାହୁ ସମସ୍ତଙ୍କୁ ଚମତ୍କୃତ କରି ଉଭାହେଲେ ଏହି ବିକ୍ଷୋଭ ପ୍ରଦର୍ଶନରେ। ଖବର ପହଞ୍ଚିଲା ଓଡ଼ିଶାରେ, ଗୁରୁତର ଅବସ୍ଥାରେ ଭର୍ତ୍ତିହେଲେ ବିଶ୍ୱନାଥ ସାହୁ ଏକ ହସ୍ପିଟାଲରେ, ଏବେ ଭଲ ହେଲେଣି ଫେରିବେ ଓଡ଼ିଶା।

ପାର୍ଟିର ନିଷ୍ପତ୍ତିରେ ବିଶ୍ୱନାଥ ସାହୁ କୃଷକମାନଙ୍କୁ ସଙ୍ଗଠିତ କରିବାର ଦାୟିତ୍ୱ ଗ୍ରହଣ କଲେ। ମୋହନ ଦାଶ, ପ୍ରାଣନାଥ ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ହରିହର ଦାସ, ସାଧୁ ମହାନ୍ତିଙ୍କ ସହ ମିଶି ନେତୃତ୍ୱ ନେଲେ ଜମିଦାର, ଇନାମ୍‌ଦାର ବିରୋଧୀ ଆନ୍ଦୋଳନର ସାଙ୍ଗରେ ସାଥୀ



ସଦାନନ୍ଦ ମହାନ୍ତି, ଦ୍ୱିତୀକୃଷ୍ଣ ପଣ୍ଡା, ହରିବନ୍ଧୁ ବେହେରା, 'ଲଙ୍ଗଳ ଯାର ଜମି ତ'ର' ନାରାରେ ଗୁଞ୍ଜରିତ ହେଲା ସାରା ରାଜ୍ୟ। ସାଧୁ ମହାନ୍ତିଙ୍କ ସାହାଯ୍ୟରେ ବିଶ୍ୱନାଥ ସାହୁ ଓ ଅନ୍ୟ ସାଥୀମାନେ ଚମାଖଣ୍ଡି ଓ ଛତ୍ରପୁର ଅଞ୍ଚଳର ଗାଁ' ଗାଁ'କୁ ସଙ୍ଗଠିତ କରିବାକୁ ଲାଗିଲେ। କମ୍ୟୁନିଷ୍ଟ ପାର୍ଟି ସାରା ଜିଲ୍ଲାରେ ପ୍ରଭାବ ବିସ୍ତାର କଲା ଓ ଏହାର ପ୍ରଭାବ ୧୯୫୨ନିର୍ବାଚନରେ ପ୍ରତିଫଳିତ ହେଲା। ବିଶ୍ୱନାଥ ସାହୁ କୃଷକ ଓ କମ୍ୟୁନିଷ୍ଟ ଆନ୍ଦୋଳନର ଜଣେ ଲଢୁଆ ତଥା ସର୍ବଜନାଦୃତ ନେତା ଭାବେ ପରିଚିତି ଲାଭକଲେ। କୃଷକ ଓ କମ୍ୟୁନିଷ୍ଟ ଆନ୍ଦୋଳନର ନେତୃତ୍ୱ ନେଇ ସେ ବାରମ୍ବାର ସାତବର୍ଷ ଜେଲ୍ ଜୀବନକୁ ବରିନେଇଥିବା ବେଳେ ବହୁବର୍ଷ ଭୂମିଗତ ହୋଇ ପାର୍ଟିକୁ ନେତୃତ୍ୱ ଦେଇ ଆସିଥିଲେ। ବାରମ୍ବାର ନିଜ ଗାଁ'ରୁ ନିର୍ଦ୍ୱନ୍ଦ୍ୱରେ ସରପଞ୍ଚ ଓ ପଞ୍ଚାୟତ ସମିତି ସଭ୍ୟଭାବେ ନିର୍ବାଚିତ ହୋଇଥିବା ବିଶ୍ୱନାଥ ସାହୁ ୧୯୭୭ ଓ ୧୯୮୦ ମସିହାରେ ଦୁଇଥର ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ବିଧାନସଭା କାଳରେ ବିପ୍ଳବୀ ନାଗଭୂଷଣ ପଟ୍ଟନାୟକଙ୍କୁ ଫାସି କବଳରୁ ରକ୍ଷାକରିବା ପାଇଁ ପ୍ରସ୍ତାବ ପାରିତ କରିବା ଓ ସାଧାରଣ ମଣିଷର କଥାକୁ ବିଧାନସଭାରେ ଉପସ୍ଥାପିତ କରିବା; ସବୁଥିରେ ସେ ସାକ୍ଷର ଛାଡ଼ି ଯାଇଛନ୍ତି।

ବିଶ୍ୱଶାନ୍ତି ଆନ୍ଦୋଳନରେ ନିଜର ଯୋଗଦାନ ପାଇଁ ସ୍ମରଣୀୟ ହୋଇ ରହିବେ। ଭାରତ-ସୋଭିଏତ୍ ମୈତ୍ରୀସଂଘ (ISCUS) ଓ ପରବର୍ତ୍ତୀ କାଳରେ, ଅଖିଳ ଭାରତ ଶାନ୍ତି ଓ ସଂହତି ସଂଘ (AIPSO) ସଙ୍ଗଠିତ

କରିବା ସହ ଏହାର ରାଜ୍ୟ ସଭାପତିମଣ୍ଡଳୀର ସଦସ୍ୟ ରହି ଆସିଥିଲେ । ଶିକ୍ଷାର ପ୍ରସାରରେ ବିଶେଷ ଭୂମିକା ନିର୍ବାହ କରିବା ସହ ବହୁ ଶିକ୍ଷାନୁଷ୍ଠାନ (ପାଠ ଦୋକାନ ନୁହେଁ) ପ୍ରତିଷ୍ଠା କରିଥିଲେ । ପୁରୁଷୋତ୍ତମପୁର ହିନ୍ଦୀ ମହାବିଦ୍ୟାଳୟକୁ ବିଶ୍ୱବିଦ୍ୟାଳୟରେ ପରିଣତ କରିବାପାଇଁ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଆପ୍ରାଣ ଉଦ୍ୟମ କରୁଥିଲେ । କୃଷକ ଆନ୍ଦୋଳନର ମହାରଥି ବିଶ୍ୱନାଥ ସାହୁ କୃଷକ ସଭାରେ ଗଞ୍ଜାମ ଜିଲ୍ଲା ସମ୍ପାଦକ, ରାଜ୍ୟ ସମ୍ପାଦକ, ସଭାପତି ଓ ରାଜ୍ୟ ସମ୍ପାଦକମଣ୍ଡଳୀରେ ଦାୟିତ୍ୱ ନିର୍ବାହ କରିଥିଲେ । ଶେଷପର୍ଯ୍ୟନ୍ତ ପାର୍ଟିର ସମ୍ମାନଜନକ କଣ୍ଟ୍ରୋଲ କମିଶନ ଅଧ୍ୟକ୍ଷ ଥିଲେ । ଆତ୍ମ ପ୍ରଚାରରୁ ବହୁ ଦୂରରେ ରହୁଥିବା ଓ ଠୋ ଠୋ କଥା ଏବଂ ତୀକ୍ଷଣ୍ ଉଚ୍ଚାରଣ ପାଇଁ ପରିଚିତ ବିଶ୍ୱନାଥ ସାହୁ ପାର୍ଟି ସାଥୀ କିମ୍ବା ନେତୃତ୍ୱକୁ ଅକାରଣ ସମାଲୋଚନା, କୁତ୍ସା, ପାର୍ଟି ଫୋରମ ବାହାରେ ଆଲୋଚନାର ତିକ୍ତବିରୋଧୀ ଥିଲେ ଏବଂ କୌଣସି ପରିସ୍ଥିତିରେ ସେ ଏଥିରେ ନିଜକୁ ସାମିଲ କରୁନଥିଲେ । ଅପରପକ୍ଷରେ ନେତୃତ୍ୱ ମଧ୍ୟରେ ଅଧିକରୁ ଅଧିକ ସମନ୍ୱୟ, ଅନ୍ୟର କାର୍ଯ୍ୟଧାରାକୁ ଗ୍ରହଣ କରିବା ଓ ସମ୍ମାନ ଦେବାରେ ସେ ଥିଲେ ଦୃଢ଼ବିଶ୍ୱାସୀ ।

ବିଶ୍ୱନାଥ ବାବୁ ଥିଲେ ଜଣେ ସମର୍ପିତ କମ୍ୟୁନିଷ୍ଟ । କମ୍ୟୁନିଷ୍ଟ ପାର୍ଟିରେ ବାରମ୍ବାର ବିଭାଜନ ତାଙ୍କୁ ବ୍ୟଥିତ କରୁଥିଲା । କମ୍ୟୁନିଷ୍ଟମାନଙ୍କ ନାମରେ କୁତ୍ସା, ଜଣେ ଅନ୍ୟ ଜଣକୁ ଗାଳିଦେଇ ନିଜକୁ ପ୍ରକୃତ ବିପ୍ଳବୀ ରୂପେ ପ୍ରତିପାଦିତ କରିବାର ଅପଚେଷ୍ଟା, କୌଣସି ପାର୍ଟିକୁ ସୁଦୃଢ଼ କରିବା ବଦଳରେ ସମଗ୍ର ଆନ୍ଦୋଳନ ଦୁର୍ବଳ କରୁଛି ବୋଲି ସେ ଦୃଢ଼ ଭାବେ ବିଶ୍ୱାସ କରୁଥିଲେ । ବିଶ୍ୱନାଥ ବାବୁ ସବୁବେଳେ କହୁଥିଲେ କମ୍ୟୁନିଷ୍ଟମାନଙ୍କ ଜନ୍ମ ଲଗ୍ନରୁ ଶ୍ରେଣୀ ଶତ୍ରୁମାନେ କୁତ୍ସାରଟନା କରି ଆସୁଛନ୍ତି । ନିଜର ଜ୍ଞାତସାରରେ ବା ଅଜ୍ଞାତ ସାରରେ କିଛି ତଥାକଥିତ ବୁଦ୍ଧିଜୀବୀ(ଏନ୍.ଜି.ଓ) ମାନଙ୍କ ସାହାଯ୍ୟରେ ପ୍ରକୃତ ଗଣତାନ୍ତ୍ରିକ ଆନ୍ଦୋଳନ ବଦଳରେ ତଥାକଥିତ ଜନଆନ୍ଦୋଳନ ତିଆରି କରି କାଠ କୁରାଢ଼ିର ବେଣ୍ଟହୋଇ ଗଛ କାଟିବା ପରି ବାମପନ୍ଥୀ/ ଗଣତାନ୍ତ୍ରିକ ଆନ୍ଦୋଳନକୁ ଦୁର୍ବଳ କରୁଛନ୍ତି । ସମୟର ଐତିହାସିକ ଆବଶ୍ୟକତା ହେଉଛି ସମସ୍ତ ବାମପନ୍ଥୀ ଶକ୍ତିମାନଙ୍କୁ ଏକାଠି କରିବା ।

ଆଜି କିନ୍ତୁ ସାରା ଦେଶରେ ଗୈରିକୀ ଆକ୍ରମଣ ତୀବ୍ରହୋଇଛି । ହିନ୍ଦୁ ମୌଳବାଦ ଧର୍ମାନ୍ଧତାର ତାଣ୍ଡବ, ସଂଘ ପରିବାର ବି.ଜେ.ପି. ଏ.ବି.ଭି.ପି.ନେତୃତ୍ୱରେ ଶିକ୍ଷାନୁଷ୍ଠାନ, ବୁଦ୍ଧିଜୀବୀଙ୍କ ଉପରେ ଆକ୍ରମଣ ମଧ୍ୟରେ ସୀମିତ ହୋଇନାହିଁ । ଦେଶର ଗଣତାନ୍ତ୍ରିକ ଧର୍ମନିରପେକ୍ଷ ଢାଞ୍ଚା ଉପରେ ଆରମ୍ଭ ହୋଇଛି ପ୍ରଚଣ୍ଡ ଆକ୍ରମଣ । ଆକ୍ରମଣର ପ୍ରତିରୋଧ ମଧ୍ୟ ଆରମ୍ଭ ହୋଇଛି । ଯୁବ ଛାତ୍ର ପ୍ରତିବାଦ ମୁଖର ହୋଇ ଉଠିଛନ୍ତି । ଗୈରିକ ତାଣ୍ଡବ ବିରୁଦ୍ଧରେ ସମସ୍ତ ଗଣତାନ୍ତ୍ରିକ ଶକ୍ତି ଏକାଠି ହେବା ନିଶ୍ଚିତ ଭାବେ ଦେଶର ଯୁବପିଢ଼ି ମଧ୍ୟରେ ନୂତନ ଉନ୍ମାଦନା ସୃଷ୍ଟି କରିଛି । କିନ୍ତୁ ଏପରି ସମୟରେ ଆମକୁ ଉତ୍ସାହିତ କରିବା ପାଇଁ, ସାହସ ଦେବା ପାଇଁ ଆମ ନେତା ବିଶ୍ୱନାଥ ସାହୁ ସଶରୀରେ ଆମ ସହ ଆଉ ନାହାନ୍ତି । ଗତ ୧୮ତାରିଖ ଦିନ ତାଙ୍କ ପ୍ରିୟ ଗ୍ରାମ ବଡ଼କୁଶସ୍ଥଳୀରେ ପ୍ରିୟ ପାର୍ଟି, ସାଥୀ, ସହୋଦର ଏବଂ ୭୦ବର୍ଷ ଧରି ତିଆରି କରିଥିବା ତାଙ୍କ ବିରାଟ ପରିବାରକୁ ଛାଡ଼ି ସେ ବିଦାୟ ନେଇଛନ୍ତି । ହଜାର ହଜାର ସାଥୀ ସମର୍ଥକ ଆଜି ବିଶ୍ୱନାଥଙ୍କୁ ଝୁରୁଛନ୍ତି । ଆଖିରୁ ଲୁହ ବୁହାଉଛନ୍ତି, କେବଳ ଝୁରିଲେ ତ ହେବନି ଲୁହ ଆଖିରୁ ପୋଛିବାକୁ ହେବ । ସଂକଳ୍ପ ନେବାକୁ ହେବ । କମ୍ୟୁନିଷ୍ଟ ଭାବେ ଜୀବନତମାମ କାର୍ଯ୍ୟ କରିଆସୁଥିଲେ ଆଜିର ପରିସ୍ଥିତିରେ ସେ କାର୍ଯ୍ୟକୁ ଆଗକୁ ନେବାକୁ ହେବ । ଦେଶକୁ ସାମ୍ପ୍ରଦାୟିକତା କବଳରୁ ରକ୍ଷା କରିବାପାଇଁ ସମସ୍ତ ବାମପନ୍ଥୀ, ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ଶକ୍ତିକୁ ଏକାଠି କରି ମହାସଂଗ୍ରାମ ଆରମ୍ଭ କରିବାକୁ ହେବ । ଏହା ଏହି ସମର୍ପିତ କମ୍ୟୁନିଷ୍ଟ ବିଶ୍ୱନାଥ ସାହୁଙ୍କ ପ୍ରତି ପ୍ରକୃତ ଶ୍ରଦ୍ଧାଞ୍ଜଳି ସହ ଐତିହାସିକ ଆବଶ୍ୟକତା । ଏହି ସଂକଳ୍ପ ସହ ମୋର ନେତା ସାଥୀ ବିଶ୍ୱନାଥ ସାହୁଙ୍କୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

*ସିପିଆଇ ଜାତୀୟ ପରିଷଦ ସଦସ୍ୟ*



# ସଂଗ୍ରାମୀମାନଙ୍କୁ ଶ୍ରଦ୍ଧା କରୁଥିଲେ

ପ୍ରଫୁଲ୍ଲ ସାମନ୍ତରା

୧୯୭୭ ସାଲରେ ଜରୁରୀ ପରିସ୍ଥିତିର ଶେଷଭାଗ ବେଳକୁ ସାଧାରଣ ନିର୍ବାଚନରେ ଛତ୍ରପୁର ବିଧାନସଭାର ସି.ପି.ଆଇ. ପ୍ରାର୍ଥୀ ରୂପେ ବିଶ୍ୱନାଥ ସାହୁଙ୍କ ବିରୋଧରେ ଜନତାପାର୍ଟିର ପ୍ରାର୍ଥୀ ଦୁର୍ଯ୍ୟୋଧନ ସାହୁଙ୍କ ସପକ୍ଷରେ ଭୋଟ ପ୍ରଚାର କଲାବେଳେ ବିଶ୍ୱନାଥ ସାହୁଙ୍କ ପରିଚୟ ଥିଲା ସେ ଜଣେ ବିଶିଷ୍ଟ କମ୍ୟୁନିଷ୍ଟ ନେତା। ବ୍ୟକ୍ତିଗତ ଭାବରେ ତାଙ୍କସହ ଦେଖା ହୋଇନଥାଏ କି ପରିଚୟ ନଥାଏ। ମୁଁ ଜରୁରୀ ପରିସ୍ଥିତିରେ ଜେଲରୁ ମୁକ୍ତ ହୋଇ ଜନତା ପାର୍ଟି ପାଇଁ ପ୍ରଚାର କରୁଥାଏ ସେତେବେଳର କଂଗ୍ରେସ ଶାସନର ଏକଛତ୍ରବାଦ ବିରୋଧରେ। ସେତେବେଳେ କଂଗ୍ରେସ ସହ ସି.ପି.ଆଇ.ର ବୁଝାମଣା ଥାଏ ନିର୍ବାଚନରେ। ବିଶ୍ୱନାଥବାବୁ ବିଜୟୀ ହେଲେ।

ବିଧାନସଭାରେ ବିରୋଧୀଦଳର ସଭ୍ୟ ରୂପେ ସାମ୍ୟବାଦ ବିଚାର ସହ ପ୍ରଗତିଶୀଳ ବିଧିବିଧାନ ପାଇଁ ସ୍ୱର ଉତ୍ତୋଳନ କରିବା ଥିଲା ତାଙ୍କର ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା। ୧୯୮୦ରେ ଜନତା ପାର୍ଟି ସରକାର ଭାଙ୍ଗିଗଲା, ପୁଣି କଂଗ୍ରେସ ଶାସନ ଆସିଲା କେନ୍ଦ୍ର ଓ ରାଜ୍ୟରେ। ଭାରତୀୟ କମ୍ୟୁନିଷ୍ଟ ପାର୍ଟି କଂଗ୍ରେସ ବିରୋଧରେ ଅନ୍ୟ ବାମପନ୍ଥୀ ଓ ଗଣତାନ୍ତ୍ରିକ ଦଳମାନଙ୍କ ସହ ମିଳିତ କାର୍ଯ୍ୟକ୍ରମରେ ସକ୍ରିୟ ଭାଗିଦାର ରହିଲା। ଗଞ୍ଜାମ ଜିଲ୍ଲାରେ ରାଜ୍ୟର କଂଗ୍ରେସ ଶାସନ ବିରୋଧରେ ସି.ପି.ଆଇ, ସି.ପି.ଆଇ.ଏମ୍, ଜନତା ଦଳର ମିଳିତ କାର୍ଯ୍ୟକ୍ରମ ବାରମ୍ବାର ବ୍ୟାପକ ଭାବରେ ହେଉଥିଲା। କଂଗ୍ରେସ ଛାଡ଼ି ଆସିଥିବା ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ବାମପନ୍ଥୀ ବିଚାରକୁ ନିଜଭିତରେ ଜୀବନ୍ତ ରଖୁଥିବା ରାଜନେତା ବିନାୟକ ଆଚାର୍ଯ୍ୟ ଏହି ମିଳିତ କାର୍ଯ୍ୟକ୍ରମର ଆଗଧାଡ଼ିର ନେତା ରୂପେ ଆମମାନଙ୍କର ସାରଥୀ ରୂପେ ରହିଥାନ୍ତି। ଏସବୁ ମିଳିତ ଗଣତାନ୍ତ୍ରିକ ଆନ୍ଦୋଳନକୁ ଅଧିକ ଭାବରେ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ନେବାରେ ବିଶ୍ୱନାଥ ବାବୁଙ୍କ ଅବଦାନ ଅଧିକ ଥିଲା। ସେ ଗଞ୍ଜାମ ଜିଲ୍ଲାରେ ଗାଁ ଗାଁରେ ପରିଚିତ ଯେହେତୁ କୃଷକ ଆନ୍ଦୋଳନକୁ ସଙ୍ଗଠିତ କରୁଥିଲେ। ସେତେବେଳେ ଜନତା ଦଳର ପଦାଧିକାରୀ ରୂପେ ମିଳିତ କାର୍ଯ୍ୟକ୍ରମଗୁଡ଼ିକୁ ସହଯୋଗ କରିବା ମୋର ଦାୟିତ୍ୱ ଥାଏ। ୧୯୯୪ ବେଳକୁ ଜନତା ଦଳରୁ ଇସ୍ତଫା ଦେଇଆସିବା ପରେ ରାଜ୍ୟରେ ଏକ ବିକଳ୍ପ ରାଜନୈତିକ ଶକ୍ତି ନିର୍ମାଣ ପାଇଁ ଜଗତୀକରଣ, ଘରୋଇକରଣ ତଥା ଉଦାରୀକରଣ ଆର୍ଥିକ ନୀତି ବିରୋଧରେ ଅଭିଯାନ କଲାବେଳେ ସ୍ୱାଭାବିକ




ଚମାଖଣ୍ଡିଠାରେ ଟାଟା ପ୍ରକଳ୍ପବିରୋଧୀ ସମାବେଶରେ ପୂର୍ବତନ ଲୋକସଭା ବାଚସ୍ପତି ରବି ରାୟ, ପରିବେଶବିତ୍ ବନ୍ଦନା ଶିବା, ପ୍ରଫେସର ଆନନ୍ଦ କୁମାର, ପ୍ରଫୁଲ୍ଲ ସାମନ୍ତରା, ଭରେଣ୍ଣୁ ଆଚାରୀଙ୍କ ସହ ବିଶ୍ୱନାଥ ସାହୁ

ଭାବେ ବାମପନ୍ଥୀ ଦଳର ନେତାମାନଙ୍କ ସହ ମୋର ଅଧିକ ସମ୍ପର୍କ ସ୍ଥାପନ ହୋଇଛି । କିନ୍ତୁ ବିଶ୍ୱନାଥ ବାବୁଙ୍କ ସହ ଅତି ନିକଟରେ ସମ୍ପର୍କ ସ୍ଥାପନ ହୋଇଗଲା । କାରଣ ମୁଁ ଜାଣିନି । କିନ୍ତୁ ବୟସରେ ମୁଁ ଖୁବ୍ ଛୋଟ ହୋଇଥିବାରୁ ତାଙ୍କରି ଶ୍ରଦ୍ଧା, ସହଯୋଗ ଓ ସମର୍ଥନ ମୋ ପାଇଁ ପ୍ରେରଣା ଥିଲା । ମୁଁ ଦଳୀୟ ରାଜନୀତିରୁ ମୁକ୍ତ ହୋଇ ସମାଜବାଦ ବିଚାର ଆଧାରରେ ପୁଞ୍ଜିବାଦୀ ଆର୍ଥିକ ସଂସ୍କାର ବିରୋଧୀ ଅଭିଯାନରେ ସକ୍ରିୟ ହେବାବେଳେ ଗୋପାଳପୁର ଟାଟା ଇସ୍ପାତ ପ୍ରକଳ୍ପ ବିରୋଧରେ ଗଣସଂଗ୍ରାମ ଆରମ୍ଭ ହୋଇଥାଏ ଛତ୍ରପୁର ଚମାଖଣ୍ଡି ଅଞ୍ଚଳରେ । ପରିବେଶକୁ ଧ୍ୱଂସକରିବା ସହ ଋଷିକୁଲ୍ୟା ନଦୀଜଳକୁ ଶୋଷିନେବା ପାଇଁ ଆସିଥିବା ଟାଟା ପ୍ରକଳ୍ପ ବିରୋଧରେ ଗୋପାଳପୁର ଉପକୂଳ ସୁରକ୍ଷା ପରିଷଦ ଗଠନ କରି ଅଭିଯାନ ଆରମ୍ଭ କଲି ଋଷିକୁଲ୍ୟା ସୁରକ୍ଷା ସହ ଗୋପାଳପୁର ଉପକୂଳର ପ୍ରାକୃତିକ ସମ୍ପଦର ସୁରକ୍ଷା ପାଇଁ । ଗଣସଂଗ୍ରାମ ସମିତିର ବିସ୍ଥାପନ ବିରୋଧୀ ଆନ୍ଦୋଳନର ସହଯୋଗୀ ରୂପେ ଏହି ଫୋରମ କାର୍ଯ୍ୟ କଲା । କିନ୍ତୁ ଏହି ଫୋରମକୁ ଅଧିକ କ୍ରିୟାଶୀଳ କରିବାରେ କୃଷକ ଆନ୍ଦୋଳନର ନେତା ବିଶ୍ୱନାଥ ବାବୁଙ୍କ ଆନ୍ତରିକ ସହଯୋଗ ମୋ ପାଇଁ ଅବିସ୍ମରଣୀୟ । ଗଣସଂଗ୍ରାମ ସମିତିର ବିଭିନ୍ନ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମରେ ବିଶ୍ୱନାଥ ବାବୁ ଯୋଗଦେବା ପୂର୍ବରୁ ମତେ ଫୋନ କରିଥାନ୍ତି ମୁଁ କେତେବେଳେ ପହଞ୍ଚୁଛି । ଆନ୍ଦୋଳନ ବେଳେ ଜାଣିଲି ଚମାଖଣ୍ଡି ଅଞ୍ଚଳରେ ଭାଗଚାଷୀ ଅଧିକାର ଆନ୍ଦୋଳନର ଇତିହାସ । ଚାଷୀମାନେ ବ୍ରହ୍ମପୁରର ଜମି ମାଲିକମାନଙ୍କ ଜମି ଚାଷକରି ସମ୍ପୂର୍ଣ୍ଣ ଅଧିକାର ପ୍ରାପ୍ତ କରିଥାନ୍ତି । ଜମି ଆନ୍ଦୋଳନ ନେତୃତ୍ୱ ନେଇଥିଲା କମ୍ୟୁନିଷ୍ଟ ପାର୍ଟି, ବିଶ୍ୱନାଥ ବାବୁ ଥିଲେ ଚାଷୀ ଆନ୍ଦୋଳନର ସଙ୍ଗଠକ । କିନ୍ତୁ ଟାଟା ପ୍ରକଳ୍ପ ପାଇଁ ଜବରଦସ୍ତ ଜମି ଅଧିଗ୍ରହଣ କଲାପରେ ଚାଷୀମାନେ ସର୍ବହରା ହୋଇଗଲେ ଓ ଜମି ମାଲିକମାନେ ଫାଇଦା ନେଲେ । ଚମାଖଣ୍ଡିରେ ହାଇସ୍କୁଲଟିଏ ପୂର୍ଣ୍ଣାଙ୍ଗ ଅବସ୍ଥାରେ ଠିଆ ହୋଇଥାଏ ୧୯୯୫ବେଳକୁ । ତା'ର ପ୍ରତିଷ୍ଠାତା ହେଉଛନ୍ତି ବିଶ୍ୱନାଥ ବାବୁ । ସେହି ସ୍କୁଲର ନିର୍ମାଣ ଆରମ୍ଭରୁ ଶେଷଯାଏଁ ଏବଂ ସ୍କୁଲର ବିକାଶ ପାଇଁ ଶେଷ ନିଃଶ୍ୱାସ ଯାଏ ବିଶ୍ୱନାଥ ବାବୁଙ୍କ ମନଯୋଗ ଥାଏ ସେହି ଶିକ୍ଷାନୁଷ୍ଠାନ ପାଇଁ । ଗଞ୍ଜାମ ଜିଲ୍ଲାରେ ଶିକ୍ଷାର ପ୍ରସାର ପାଇଁ ଶିକ୍ଷାନୁଷ୍ଠାନ ଗଢ଼ିତୋଳିବାକୁ ଉଦ୍ୟମ କରିବା ଥିଲା ବିଶ୍ୱନାଥ ବାବୁଙ୍କ ଏକ ଝୁଙ୍କ । ହିଞ୍ଜିଳି ଅଞ୍ଚଳର ଆଳପୁର




ଛତ୍ରପୁରଠାରେ ଏକ ନିର୍ବାଚନୀ କାର୍ଯ୍ୟକ୍ରମରେ ସିପିଆଇ ସାଧାରଣ ସମ୍ପାଦକ ଏସ୍. ସୁଧାକର ରେଡ୍ଡି, ସିପିଏମ୍ ମହାସଚିବ ସୀତାରାମ ୟେଚୁରୀଙ୍କ ସହ କଃ. ବିଶ୍ୱନାଥ ସାହୁ

ଗାଁର ପ୍ରତିଟି ବୟସ୍କ ଲୋକ କହିବେ ସେଠାରେ ସ୍କୁଲ ଆରମ୍ଭ କରିବାକୁ ବିଶ୍ୱନାଥ ବାବୁ ଆଲପୁରକୁ କିପରି ନିଜ ଗାଁ କରି ଦେଇଥିଲେ ।

ବିଶ୍ୱନାଥ ବାବୁଙ୍କ ଠାରୁ ମୁଁ ଶୁଣେ ତାକରଡ଼ା ଗୁଳିକାଣ୍ଡର ଇତିହାସ । କମ୍ୟୁନିଷ୍ଟ ନେତା ଗୋବିନ୍ଦ ପ୍ରଧାନଙ୍କ ନେତୃତ୍ୱରେ ଚାଷୀ ଆନ୍ଦୋଳନକୁ ଚପାଇ ଦେବାକୁ ଗୁଳିକାଣ୍ଡ ହୋଇଥିଲା । ସେତିକିବେଳେ ବିଶ୍ୱନାଥ ବାବୁ ଯୁବ ଚାଷୀନେତା ଭାବରେ ଜେଲରେ ରହିବାକୁ ପଡ଼ିଲା । ମୋ ସହ ଯେବେବି ଆଲୋଚନା କରନ୍ତି ତାଙ୍କରି କଥାରେ ପ୍ରାଥମିକତା ଥାଏ ବିନା ଚାଷୀ ଆନ୍ଦୋଳନରେ ଗାଁ ଲୋକଙ୍କୁ ନ୍ୟାୟ ମିଳିବ ନାହିଁ । ବିସ୍ଥାପନବିରୋଧୀ ତଥା ପ୍ରାକୃତିକସମ୍ପଦର ସୁରକ୍ଷା ସହ ଚାଷୀ ଓ ଆଦିବାସୀଙ୍କ ଅଧିକାର ଆନ୍ଦୋଳନକୁ ସେ ସର୍ବଦା ସମର୍ଥନ ଦେବା ସହ ନିଜେ ସାମିଲ ହେବାକୁ ମନ କରୁଥିଲେ । ବାର୍ଦ୍ଧକ୍ୟତା ତାଙ୍କୁ ରୋକିପାରୁନଥିଲା । ଲେଖିଲେ ତ ଅନେକ ହେବ । ତାଙ୍କର ମହନୀୟତା ମତେ ପ୍ରଭାବିତ କରିଥିଲା । ୨୦୦୦ରେ ସେ ଥିଲେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଛତ୍ରପୁର ବିଧାନସଭା ପ୍ରାର୍ଥୀ । ସ୍ୱାଧୀନ ଭାବେ ଗଣସଂଗ୍ରାମ ସମିତିର ନେତା ନାରାୟଣ ରେଡ଼ି ମଧ୍ୟ ପ୍ରାର୍ଥୀ ହୋଇଥାନ୍ତି । ବିଶ୍ୱନାଥ ବାବୁ ମତେ ଚିଠି ଲେଖିଥାନ୍ତି ମୁଁ ତାଙ୍କପାଇଁ ପ୍ରଚାର କରିବାକୁ । କିନ୍ତୁ ସେତେବେଳେ ଗଣସଂଗ୍ରାମ ସମିତିର ଆନ୍ଦୋଳନ ଯୋଗୁଁ ନାରାୟଣ ରେଡ଼ିଙ୍କ ପ୍ରାର୍ଥୀତ୍ୱ ବିଜେପି ପ୍ରାର୍ଥୀଙ୍କ ବିରୋଧରେ ବଳିଷ୍ଠ ଥିଲା । ବିଜେପି ପ୍ରାର୍ଥୀ ମଧ୍ୟ ଟାଟା ପ୍ରକଳ୍ପ ସପକ୍ଷରେ ଥିଲେ । ମୋର ବିବେକ କହିଲା ବିଜେପି ପ୍ରାର୍ଥୀଙ୍କୁ ହରାଇବା ପାଇଁ ମତେ କାର୍ଯ୍ୟ କରିବାକୁ ହେବ । ମୁଁ ବିଶ୍ୱନାଥ ବାବୁଙ୍କ ପାଖକୁ ନିର୍ବାଚନ ପୂର୍ବରୁ ଖଣ୍ଡିଏ ଚିଠି ଲେଖି ଜଣାଇଲି 'ମୁଁ ଆନ୍ଦୋଳନର ସ୍ୱାର୍ଥଦୃଷ୍ଟିରୁ ଓ ସାମ୍ପ୍ରଦାୟିକ ଦଳର ପରାଜୟ ଦୃଷ୍ଟିରୁ ସ୍ୱାଧୀନ ପ୍ରାର୍ଥୀ ନାରାୟଣ ରେଡ଼ିଙ୍କ ସପକ୍ଷରେ ପ୍ରଚାର କରୁଛି । ଆପଣ ଜଣେ ସଚ୍ଚୋଟ ସାମ୍ୟବାଦୀ ନେତା ରୂପେ ମୋର ଭୂମିକାକୁ ଭୁଲ୍ ବୁଝିବେ ନାହିଁ । ଆପଣଙ୍କୁ ସମ୍ମାନ ଦେଇ ମୁଁ ଏହି କାର୍ଯ୍ୟ କରୁଛି ।' ନିର୍ବାଚନ ସରିଲା ବିଜେପି ଜିତିଗଲା । କିନ୍ତୁ ତାପରେ ବିଶ୍ୱନାଥ ବାବୁ ପ୍ରଥମଦେଖାରେ ହସିଦେଇ କହିଲେ ଚିଠି ମିଳିଥିଲା । ତାପର ସମୟରେ ମୁଁ ଦେଖିଆସିଛି, ଅନୁଭବ କରୁଛି ବିଶ୍ୱନାଥ ବାବୁ ଅଧିକଥର ମତେ ଫୋନ କରିବେ, ଆଲୋଚନା କରିବେ ଓ ମୋ ଦ୍ୱାରା ସମ୍ପାଦିତ ପତ୍ରିକା ମଣିଷର ବାର୍ତ୍ତାବହ ସ୍ୱାଭିମାନକୁ ନିୟମିତ ଭାବେ ପଢ଼ିବେ । ଯେଉଁଥର ସ୍ୱାଭିମାନ ପହଞ୍ଚିବା ଡେରି ହେବ, ଫୋନ କରି ପଚାରିବେ କାହିଁକି ଆସିନି ? ତଳସ୍ତରରୁ ସଙ୍ଗଠନ କରିଆସିଥିବା କୃଷକ ନେତା ରୂପେ ମୂଲ୍ୟବୋଧକୁ ଅତି ଗୁରୁତ୍ୱ ଦେଉଥିଲେ । ପତ୍ରିକାର ବାର୍ଷିକ ଦେୟ ସେ ଡାକରେ ପଠାଇଦେବେ । ଏବେ ସେ ଅସୁସ୍ଥ ହେବାର ଏକମାସ ପୂର୍ବରୁ ମତେ ଫୋନକଲେ ପତ୍ରିକା ପାଇଁ ଦୁଇଶତ ଟଙ୍କା କାହାକୁ ପଠାଇ ଭଗବତୀ ଭବନରୁ ନେଇଯାଅ । ମୁଁ ତାଙ୍କୁ ଉତ୍ତର ଦେଲି : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଆପଣଙ୍କୁ ଦେଖାକରିବି ଗାଁରେ । ସେଠାରୁ ନେଇଆସିବି । ତା ପରେ ସେ ହସ୍ପିଟାଲରେ । ଥରେ ସୁଧୀର ପଟ୍ଟନାୟକଙ୍କ ସହ ଯାଇ ହସ୍ପିଟାଲରେ ଦେଖାକରି ଆସିଲି । ମୁଁ ପୁଣି ଗାଁକୁ ଯାଇ ଦେଖିବାକୁ ଯୋଜନା କରିଥିଲି । କିନ୍ତୁ ତାହା ହୋଇପାରିଲା ନାହିଁ । ସେ ମୋର ୨୦୦ଟଙ୍କା ବାକି ରଖି ଚାଲିଗଲେ ସବୁଦିନ ପାଇଁ । ମୁଁ ଦିଲ୍ଲୀରେ ଏକ କାର୍ଯ୍ୟକ୍ରମ ସାରି ଭୁବନେଶ୍ୱର ପହଞ୍ଚିଲା ପରେ ବିଶ୍ୱନାଥ ବାବୁଙ୍କ ନିଧନ ଖବର ଶୁଣିଲାବେଳକୁ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଶେଷ ହୋଇଯାଇଥିଲା । ମୋର ଅବଶୋଷ ରହିଗଲା । ତାଙ୍କୁ ଶେଷ ଦର୍ଶନ କରିପାରିଲି ନାହିଁ । ମୁଁ ମଧ୍ୟ ତାଙ୍କ ପାଖରେ ଋଣୀ ହୋଇ ରହିଗଲି, ଯାହାଙ୍କୁ ମୁଁ ପ୍ରତିଶ୍ରୁତି ଦେଇଥିଲି ଗାଁକୁ ଯାଇ ଦେଖା କରିବାକୁ, ତାଙ୍କରି ମରଶରୀର ପାଖରେ ବି ଠିଆହୋଇ ଫୁଲ ଦିଟା ଦେଇପାରିଲି ନାହିଁ । ସେ ମହାନ ଥିଲେ ମଣିଷ ଭାବରେ, ଜଣେ ସାମ୍ୟବାଦୀ କୃଷକନେତା ଭାବରେ ସମାଜକୁ ଓ ସମାଜର ପରିବର୍ତ୍ତନକାମୀ ସଂଗ୍ରାମୀମାନଙ୍କୁ ଭଲ ପାଉଥିଲେ ଶ୍ରଦ୍ଧା କରୁଥିଲେ । ସେହି ମହାନତା ପାଇଁ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।



*ଲୋକଶକ୍ତି ଅଭିଯାନର ରାଜ୍ୟ ସଭାପତି*

# ଏକ ସଂଘର୍ଷମୟ ସଫଳ ବ୍ୟକ୍ତିତ୍ୱ

# ବିଶ୍ୱନାଥ ସାହୁ

ଚନ୍ଦ୍ରଶେଖର ସାହୁ

ଗଞ୍ଜାମ ଜିଲ୍ଲା ବଡ଼କୁଶସ୍ଥଳୀ ଗ୍ରାମର ସମ୍ଭ୍ରାନ୍ତ ମଧ୍ୟବିତ୍ତ ପରିବାରରେ ୧୯୨୫ ମସିହାରେ ବିଶ୍ୱନାଥ ସାହୁଙ୍କର ଜନ୍ମ। ସଂଯୋଗବଶତଃ ଏହି ବର୍ଷ ହିଁ ଆମଦେଶରେ ଭାରତୀୟ କମ୍ୟୁନିଷ୍ଟ ଦଳର ଜନ୍ମ। ବିଧିର ବିଧାନ ବଡ଼ ବିଚିତ୍ର। ପରବର୍ତ୍ତୀ କାଳରେ ବିଶ୍ୱନାଥ ସାହୁ ଏହି ଦଳର ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ, ନିଜ ଭବିଷ୍ୟତ ଗଢ଼ିବା ସ୍ୱପ୍ନ ଦେଖନ୍ତି ଏବଂ ଛାତ୍ର ଜୀବନରେ ହିଁ ଏହି ଦଳରେ ସାମିଲ ହୋଇ କାର୍ଯ୍ୟାରମ୍ଭ କରନ୍ତି।

ଆମ ଦେଶର ସ୍ୱାଧୀନତା ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ (ପ୍ରଥମ ଦଶନ୍ଧି) କାଳରେ ଆତ୍ମପ୍ରକାଶ କରିଥିବା ଦକ୍ଷିଣପନ୍ଥୀ, ବାମପନ୍ଥୀ, ମଧ୍ୟମପନ୍ଥୀ,ଚରମପନ୍ଥୀ, ନରମପନ୍ଥୀ, ବିଭିନ୍ନ ନୀତିବାଦର ଆଦର୍ଶ ଗ୍ରହଣ କରି, ଏକ ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶକୁ ଆଧାର କରି ବିଭିନ୍ନ ରାଜନୈତିକ ଦଳ ସୃଷ୍ଟି ହୋଇଥିଲା। ଏ ଦେଶର ବିଭିନ୍ନ ସମସ୍ୟାର ସମାଧାନ ଲକ୍ଷ୍ୟ ନେଇ ନିଜ ନିଜର ପରିସର ମଧ୍ୟରେ ନିଷ୍ଠାପର ଉଦ୍ୟମ ଚଳାଉଥିବା ଦେଖାଯାଉଥିଲା। ଫଳତଃ ରାଜନୈତିକ ଦଳମାନଙ୍କ ନେତୃବୃନ୍ଦଙ୍କ ସମେତ ସାଧାରଣ କର୍ମୀଟିଏ ପ୍ରତି ଦେଶବାସୀଙ୍କ ଶ୍ରଦ୍ଧା, ସମ୍ମାନ ଓ ପ୍ରଗାଢ଼ ବିଶ୍ୱାସ ରହିଥିଲା। ସାଧାରଣ ଜନତା ସେମାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରୁଥିଲେ। କେତେକ କ୍ଷେତ୍ରରେ ସେମାନଙ୍କୁ ନିଜର ତ୍ରାଣକର୍ତ୍ତା ବି ଭାବୁଥିଲେ। ସେ ଗାନ୍ଧିଜୀଙ୍କୁ ବୁଝନ୍ତୁ, ମାର୍କସବାଦୀ କିମ୍ବା ଲୋହିଆବାଦୀ ହୁଅନ୍ତୁ, ସମସ୍ତଙ୍କ ଲକ୍ଷ୍ୟଥିଲା ନିଜ ନିଜ ପନ୍ଥାରେ ଦେଶର ଉନ୍ନତି ସାଧନ କରିବା। ସୁତରାଂ ଦେଶବାସୀ ଯେ, ଯେଉଁ ଦଳର ଆଦର୍ଶରେ ଉଦ୍‌ବୁଦ୍ଧ ହେଉଥିଲେ ସୁଦ୍ଧା ଅନ୍ୟ ଦଳପ୍ରତି ଅସୂୟାଭାବ ବା ଅସମ୍ମାନ ପ୍ରଦର୍ଶନ ଅତ୍ୟନ୍ତ ନଗଣ୍ୟ ଥିଲା। ପରସ୍ପର ପ୍ରତି ଅସହିଷ୍ଣୁତା ବିରଳ ଥିଲା। ବରଂ ବନ୍ଧୁତ୍ୱ ଭାବ ପ୍ରକାଶ ପାଉଥିଲା। କାରଣ ଆଦର୍ଶ ବା ପନ୍ଥା ଭିନ୍ନଥିଲେ ସୁଦ୍ଧା ସମସ୍ତଙ୍କ ଲକ୍ଷ୍ୟ ଏକ ଥିଲା। ତାହା ହେଲା "ଦେଶର ଉନ୍ନତିସାଧନ"। ତତ୍‌କାଳୀନ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବହାରଲାଲ ନେହେରୁ ବିରୋଧୀ ଦଳରୁ ବିଶିଷ୍ଟ ନେତୃବୃନ୍ଦଙ୍କ ସଂସଦକୁ ନିର୍ବାଚିତ ହୋଇ ଆସିବା ନିମନ୍ତେ ଆଗ୍ରହପ୍ରକାଶ କରୁଥିଲେ। ଏପରିକି ଏଥି ନିମନ୍ତେ ପରୋକ୍ଷ ସମର୍ଥନ ଜଣାଉଥିବା ନେଇ ଶୁଣାଯାଏ। ଯାହା ଆଜିର ରାଜନୀତିରେ ଏକ ଦୁର୍ଲଭ ଘଟଣା।

ଯେହେତୁ ଆଜିର ରାଜନୀତିରେ ଦେଶପ୍ରେମ ଅପେକ୍ଷା ଆତ୍ମପ୍ରେମ ପ୍ରାଧାନ୍ୟ ଲାଭ କରିଛି। କ୍ଷଣିକ ସ୍ୱାର୍ଥ ସାଧନର ଅସ୍ତ୍ର ହୋଇଛି ଚଳିତ ରାଜନୀତି। ଏହି କ୍ଷେତ୍ରରେ ଉଭେଇ ଯାଇଛି ନିଷ୍ଠାପରତା, କର୍ତ୍ତବ୍ୟ ପରାୟଣତା। ଏହାର ସ୍ଥାନ ଦଖଲ କରିଛି ଚଂଚକତା, ଶଠତା, ଅସହିଷ୍ଣୁତା, ଅସାଧୁତା। ସମାଜ ବିକାଶର ଧାରା ଓ ସାମାଜିକ ଦାୟିତ୍ୱବୋଧ ସୁଦୂର ପରାହତ। ହ୍ରାସ ପାଇବାରେ ଲାଗିଛି ମାନବିକତା। ଦେଶରେ ଶ୍ରେଣୀବିହୀନ ସମାଜର ସ୍ୱପ୍ନ ଏବେ ଶ୍ରେଣୀ ବୃଦ୍ଧି ଚିନ୍ତାରେ ପରିଣତ ହୋଇଛି। ବିଭିନ୍ନ ବର୍ଗ ସୃଷ୍ଟିକରି, ସେମାନଙ୍କୁ ଅବାଞ୍ଛିତ ସୁବିଧା ସୁଯୋଗ ପ୍ରଦାନ ପୂର୍ବକ ନିଜର ଜୟଗାନ ଓ ସୁରକ୍ଷା ବଳୟ ସୃଷ୍ଟି କରିବା ଲକ୍ଷ୍ୟ କ୍ଷୀପ୍ରଗତିରେ କାର୍ଯ୍ୟକାରୀ

କରାଯାଉଥିବା ଦେଖାଯାଏ। ଯାହାଫଳରେ ଗଣତନ୍ତ୍ର ପ୍ରତି ବିପଦ ସୃଷ୍ଟି ହେବା ସହ ଦେଶ ଖଣ୍ଡ ବିଖଣ୍ଡିତ ହେବା ଆଶଙ୍କା ସୃଷ୍ଟି ହୋଇଛି। ସୁତରାଂ ଦେଶର ହିତପାଇଁ ସାଂପ୍ରତିକ ବିଚାରଧାରାର ପରିବର୍ତ୍ତନ ଏକାନ୍ତ ଆବଶ୍ୟକ। ଦେଶର ଅର୍ଥନୀତି ଓ ରାଜନୀତି ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠିର ନିୟନ୍ତ୍ରଣାଧୀନ ହେବାକୁ ଯାଉଥିବା ସୂଚନା ପ୍ରକାଶ ପାଉଛି। ଏଥିପ୍ରତି ସଚେତନ, ବିଜ୍ଞ ଦେଶବାସୀ ସତର୍କ ହେବା ସହ ଏହି ପ୍ରକ୍ରିୟାକୁ ରୋକିବା ନିମନ୍ତେ ଉଦ୍ୟମ ହେବା ସଙ୍ଗେ ସଙ୍ଗେ ଏକ ଦୃଢ଼ ଗଣଆନ୍ଦୋଳନ ଗଢ଼ିତୋଳିବା ନିତାନ୍ତ ଆବଶ୍ୟକ। ବିଶେଷତଃ ଆମ ଦେଶର ଉଦାବ ଯୁବଶକ୍ତି କ୍ଷଣିକ ଉନ୍ମାଦନା ଓ ଲୋଭର ବଶବର୍ତ୍ତୀ ହେବା ପୂର୍ବରୁ ବାରମ୍ବାର ସ୍ଥିର ଚିତ୍ତରେ ଚିନ୍ତା କରି ନିଷ୍ପତ୍ତି ଗ୍ରହଣ କରିବା , ଗୁରୁ ଦାୟିତ୍ୱ ପାଳନ କରିବା ଏକାନ୍ତ ଜରୁରୀ।



ଦେଶର ଏଭଳି ଦୁର୍ଦ୍ଦିନରେ କୋଟି କୋଟି ବିଶ୍ୱନାଥ ସାହୁଙ୍କ ଆବଶ୍ୟକତା ଥିବାବେଳେ ଜଣେ ନିଷ୍ଠାପର, ଦିଗଦର୍ଶୀ, ଦକ୍ଷ ଦେଶପ୍ରେମୀ, ଦୂରଦୃଷ୍ଟିସମ୍ପନ୍ନ ବିଶ୍ୱନାଥ ସାହୁଙ୍କ ବିୟୋଗ ଆମ ପାଇଁ ଏକ ଅପୂରଣୀୟ କ୍ଷତି ଏବଂ ଦାରୁଣ ଆଘାତ କହିଲେ ଅତ୍ୟୁକ୍ତି ହେବନାହିଁ। ସେ ଥିଲେ ଗରିବର ବନ୍ଧୁ, ଅସହାୟର ସହାୟକ, ନିପୀଡ଼ିତର ତ୍ରାଣକର୍ତ୍ତା ତଥା ଦେଶ ସ୍ୱାର୍ଥର ଜାଗ୍ରତ ପ୍ରହରୀ। ତାଙ୍କ ଜୀବନଚର୍ଯ୍ୟାକୁ ଗଭୀରଭାବେ ଅନୁଶୀଳନ କଲେ ଆମେ ଏହି ନିଷ୍ପତ୍ତି ହିଁ ପାଇବା।

ପ୍ରାଣୀ ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ। ଏହା ଶାସ୍ତ୍ରସମ୍ମତ ଓ ବିଜ୍ଞାନ ସମ୍ମତ। ଏଥିରେ ଦ୍ୱିରୁକ୍ତି ନାହିଁ। ଆମ ଶାସ୍ତ୍ରରେ କୁହାଯାଇଛି "ମର୍ତ୍ତ୍ୟ ମଣ୍ଡଳ ଦେହ ବହି", ଦେବତା ହେଲେ ହେଁ ମରଇ। ଅର୍ଥାତ୍ ଏ ଧରାପୃଷ୍ଠରେ ସ୍ୱୟଂ ଦେବତା ଜନ୍ମଗ୍ରହଣ କଲେ ବି ମୃତ୍ୟୁ ସୁନିଶ୍ଚିତ। ଏହା ଅନ୍ୟଥା ହେବାର ନୁହେଁ। କିନ୍ତୁ କୃତକର୍ମ ଫଳରେ ମରଣ ଲଭିଥିବା ପ୍ରାଣୀ ଅମର ହୋଇଥାଏ। ସ୍ୱାମୀ ବିବେକାନନ୍ଦ କହିଥିଲେ ଉଠ, ଜାଗ, ନିଜର ଲକ୍ଷ୍ୟ ହାସଲ ପୂର୍ବରୁ ବିରତ ହୁଅ ନାହିଁ। ସେହି ମହାମାନବଙ୍କ ବାଣୀ ସେ ନିଜ ଜୀବନରେ ଆଦରି ନେଇଥିଲେ। ଏହା କହିଲେ ଭୁଲ ହେବ ନାହିଁ।

ତାଙ୍କ ଜନ୍ମର ତିନି ଦଶନ୍ଧିପରେ ମୋର ଜନ୍ମ। ତେଣୁ ତାଙ୍କ ଉଦ୍ଦାମ ଯୁବପ୍ରତିଭାର ପ୍ରତ୍ୟକ୍ଷ ଅନୁଭବର ସୁଯୋଗ ପାଇନାହିଁ। କିନ୍ତୁ ଯେହେତୁ ସେ ଆମ ପାରିବାରିକ ବନ୍ଧୁ ଥିଲେ, ତେଣୁ ତାଙ୍କ ସମ୍ପର୍କରେ ମୋ ନନା ଓ ବୋଉଙ୍କ ଠାରୁ କିଛି ଜାଣିବା ସୁଯୋଗ ପାଇଛି। ପରବର୍ତ୍ତୀ ସମୟରେ ଛାତ୍ର ରାଜନୀତିରୁ ଯେତେବେଳେ ପ୍ରତ୍ୟକ୍ଷ ରାଜନୀତିରେ ପାଦ ଦେଲି, ସେତେବେଳେ ତାଙ୍କ ଦକ୍ଷତାର ପ୍ରତ୍ୟକ୍ଷ ଅନୁଭୂତି ଲାଭ କଲି। ସେ ଅନେକ ସମୟରେ ମୋତେ ବହୁ ମୂଲ୍ୟବାନ ପରାମର୍ଶ ଦେବା ସହ କୁଟୀଳ ରାଜନୀତି ସମ୍ପର୍କରେ ସତର୍କ କରାଇ ଦେଉଥିଲେ। ମୋଟ ଉପରେ ସେ ଥିଲେ ମୋର ଜଣେ ହିତକାଂକ୍ଷୀ।

ଏହି ଅବସରରେ ତାଙ୍କ ଅମ୍ଳାନ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସହ ଅମର ଆତ୍ମାର ଶାନ୍ତି କାମନା କରୁଛି।

*ପୂର୍ବତନ କେନ୍ଦ୍ର ମନ୍ତ୍ରୀ*



# ବିଶ୍ୱନାଥ ସାହୁ- ଏକ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ

ଭଗବାନ ସାହୁ

୧୯୫୩ ମସିହା ମଧ୍ୟଭାଗର ଏକ ଉଦୁଉଦିଆ ଖରାବେଳ। ଦଳେ ପ୍ରଚାରକ ପଦଯାତ୍ରୀ ହାତରେ ଦା' ଧାନକେଣ୍ଡା ଚିହ୍ନିତ ଲାଲ ପତାକା, ଟିଣ ତୁଙ୍ଗା, ଆଉ କିଛି ପ୍ରଚାରପତ୍ର ଧରିଥାନ୍ତି। ବଡ଼କୁଶସ୍ଥଳୀ ଗ୍ରାମର ଗାଁଦାଣ୍ଡରେ ସାହି ସାହି ବୁଲି ପ୍ରଚାର ପତ୍ର ବାଣ୍ଟିଦେଇ ଆସିଲେ। ପାଟିରେ ଉଚ୍ଚାଟ ଧ୍ୱନି। ପାଦରେ ଜୋତା ନଥାଏ, ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଜିନ୍ଦାବାଦ। ବିନାୟକ ଆଚାର୍ଯ୍ୟଙ୍କୁ ଭୋଟ ଦିଅ। ଚାଷୀମୂଲିଆର ସରକାର ଗଢ଼। ସେମାନେ ୧୬/୧୭ଜଣ ଯୁବକ। ଦୃପ୍ତ ଠାଣିରେ ପାଦ ପଡୁଥାଏ। ସେମାନେ ଆସି ବିଶ୍ୱନାଥ ସାହୁଙ୍କ ଘର ବାରଣ୍ଡାରେ ଥକ୍କା ମାରି ବସିଗଲେ। ମୁଣ୍ଡରେ ବନ୍ଧା ହୋଇଥିବା ପଗଡ଼ି ଖୋଲି ମୁହଁ ଦେହର ଝାଳ ପୋଛିଲେ। ଶୋଷରେ ତଣ୍ଟି ଶୁଖି ଯାଉଥାଏ। ପିଇବାକୁ ପାଣି ମାଗିଲେ। ବିଶ୍ୱନାଥ ସାହୁଙ୍କ ବୋଉ ପିଇବା ପାଣି ଗିଲାସ, ଢ଼ାଳକୁ ନାତି ହାତରେ ପଠାଇଲେ। ଭୋକରେ ପେଟ ଆଉଟୁ ପାଉଟୁ ହୋଇଯାଉଥାଏ। ବିଶ୍ୱନାଥ ସାହୁ ଘରେ



ନଥାନ୍ତି। ତାଙ୍କର ବୋଉ ପଚାରିଲେ, ତୁମେମାନେ କେହି ଖାଇ ନଥିବ। ଏ ତ' ଅବେଳ। ଜଣକ ପାଇଁ ଖାଇବା ହେବ। ରାନ୍ଧିଲାବେଳକୁ ଡେରି ମଧ୍ୟହେବ। ଘରେ ଥିବା କିଛି ଗୁଡ଼ବୋଳା ଉଖୁଡ଼ା ବାଉଁଶ ଜାଲିରେ ଆଣିଦେଲେ। ଗୁଡ଼, ପାଣିଗିଲାସ, ତାଟିଆ ମଧ୍ୟ ପଠାଇ ଦେଲେ। ତୁମେମାନେ ଏହାକୁ ଖାଉଥାଅ। ମୁଁ ଭାତ ଦି'ଟା ରାନ୍ଧିଦିଏ। ପଦଯାତ୍ରୀମାନେ ଉଖୁଡ଼ାରୁ କିଛି କିଛି ପାଟିରେ ପକାଇଲେ। ପାଣି ଢୋକେ ଢୋକେ ପିଇଲେ। ଉଖୁଡ଼ାକୁ ବତୁରାଇ ଗୁଡ଼ ମିଶାଇ ମେଂଚାଏ ଲେଖାଏଁ ଖାଇନେଲେ। କିଛି ଆଶ୍ୱସ୍ତି ଅନୁଭବ କଲେ। ଏଥିଲା ୧୯୫୨-୫୩ ମସିହା ବେଳର ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରଚାର। ଆଜିର ପ୍ରଚାର ଭିନ୍ନ। ମଟର ଗାଡ଼ି, ମାଂସପକୋଡ଼ା,

ଡାକବାକ୍ସ ଯନ୍ତ୍ର ଆଉ ଭଡ଼ାଟିଆ କର୍ମୀ। ଭୋଟରଙ୍କ ସହ ବ୍ୟକ୍ତିଗତ ସମ୍ପର୍କର ଆବଶ୍ୟକତା ନାହିଁ। କିଛି ପ୍ରଲୋଭନ ହିଁ ପାଥେୟ। ଏଥିରେ କ'ଣ ଏକ ଶୋଷଣକାରୀ ଶାସନତନ୍ତ୍ରକୁ ଫୋପାଡ଼ି ଦେଇହେବ! ଏକ ଶୋଷଣହୀନ ସମାଜ ପ୍ରତିଷ୍ଠା କରାଯାଇପାରିବ! ଏହା ହିଁ ଆଜିର ପ୍ରଶ୍ନ। ୧୯୫୨ ମସିହାରେ ଦେଶରେ ପ୍ରଥମ ସାଧାରଣ ନିର୍ବାଚନ ହେଲା। ବ୍ରହ୍ମପୁର ଲୋକସଭା ଆସନରୁ ବିଜୟ ଚନ୍ଦ୍ର ଦାସ କମ୍ୟୁନିଷ୍ଟ ପ୍ରାର୍ଥୀଭାବେ ନିର୍ବାଚିତ ହେଲେ। ବ୍ରହ୍ମପୁର ବିଧାନସଭା ମଣ୍ଡଳୀରୁ ଜିତିଥିବା ପ୍ରାର୍ଥୀଙ୍କ ନିର୍ବାଚନ ଅଦାଲତରେ ଅସିଦ୍ଧ ଘୋଷଣା ହେବା ଫଳରେ ୧୯୫୩ ମଧ୍ୟଭାଗରେ ଉପନିର୍ବାଚନ ଅନୁଷ୍ଠିତ ହେଲା। ଏଥିରେ ଭାରତୀୟ କମ୍ୟୁନିଷ୍ଟ ଦଳ ପକ୍ଷରୁ ପ୍ରଧାନଶିକ୍ଷକ ପଦରୁ ଇସ୍ତଫା ଦେଇ ବିନାୟକ ଆଚାର୍ଯ୍ୟ ପ୍ରାର୍ଥୀ ହେଲେ। ଏବଂ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ହେଲେ କଂଗ୍ରେସର ବୃନ୍ଦାବନ ନାୟକ। ସେ ପାଟପୁର (ହିଂଜିଳି) ବିଧାନସଭା ମଣ୍ଡଳୀରୁ ୧୯୫୨ ନିର୍ବାଚନରେ ସିପିଆଇ ପ୍ରାର୍ଥୀ ଗୋବିନ୍ଦ ପ୍ରଧାନଙ୍କଠାରୁ ହାରି ଯାଇଥିଲେ। ପରାଜୟର ଗ୍ଲାନିରୁ ନିଜକୁ ବଂଚାଇବାପାଇଁ ଆଜିକାଲି ନିର୍ବାଚନ ରଣ ଜିତିବା ପାଇଁ ଯେଉଁ ପନ୍ଥା ଗ୍ରହଣ କରାଯାଉଛି, ତାହାକୁ ପ୍ରୟୋଗ କଲେ। ଜିତିଲେ ମଧ୍ୟ।



ଗଂଜାମ ଜିଲ୍ଲା ସେତେବେଳେ କମ୍ୟୁନିଷ୍ଟମାନଙ୍କ ଦୁର୍ଗରୂପେ ବିବେଚନା କରାଯାଉଥିଲା। କଂଗ୍ରେସର ମୁଖ୍ୟ ବିରୋଧୀ ଥିଲେ କମ୍ୟୁନିଷ୍ଟ। ଆଉ କୌଣସି ରାଜନୈତିକ ଦଳର ସଂଗଠନ ନଥିଲା କହିଲେ ଚଳେ। କମ୍ୟୁନିଷ୍ଟ ଦଳର କର୍ମୀମାନେ ଭୋକ ଉପାସରେ ଖରାତରା ସହି ଦଳପାଇଁ କାର୍ଯ୍ୟ କରୁଥିଲେ। ଏହି ତ୍ୟାଗ ଓ ନିଷ୍ଠାର ଅବକ୍ଷୟ ନେତାଠାରୁ କର୍ମୀଙ୍କ ପର୍ଯ୍ୟନ୍ତ ଗ୍ରାସିଛି।

୧୯୪୩ ମସିହାରେ ଗଂଜାମ ଜିଲ୍ଲାରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ମୂଳଦୁଆ ପଡ଼ିଲା। ବିଧିବଦ୍ଧ ସାଂଗଠନିକ ରୂପ ନେଲା। ୧୯୪୬ ମସିହାରେ ହରିହର ଦାସ ଏହାର ପ୍ରଥମ ଜିଲ୍ଲା ସମ୍ପାଦକ ନିର୍ବାଚିତ ହେଲେ। କୃଷକ ଓ ଭାଗଚାଷୀ ଆନ୍ଦୋଳନ ମଧ୍ୟ ଦେଇ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଗଠିତ ଓ ପ୍ରସାରିତ ହୋଇଥିଲା। ଏହାର ଆଦ୍ୟ ନେତାମାନଙ୍କ ମଧ୍ୟରେ ଗୋବିନ୍ଦ ପ୍ରଧାନ, ବିଜୟଚନ୍ଦ୍ର ଦାସ, ହରିହର ଦାଶ, ସଦାନନ୍ଦ ମହାନ୍ତି, ବିଶ୍ୱନାଥ ସାହୁ, ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, ଦୂତୀକୃଷ୍ଣ ପଣ୍ଡା, ବଳଭଦ୍ର ଆରୁଖ, ଲକ୍ଷ୍ମଣ ମହାପାତ୍ର, ହରିବନ୍ଧୁ ବେହେରା ପ୍ରମୁଖ ଅଗ୍ରଗଣ୍ୟ ଥିଲେ। ଏହି କୃଷକ ଆନ୍ଦୋଳନ ଯୋଗୁଁ ଜମିଦାରୀ ପ୍ରଥା ଉଠିଲା। ଇନାମଦାର ଓ ମୁସ୍ତାଦାର ଶୋଷଣ ଲୋପ ହେଲା। ଭାଗଚାଷୀମାନେ ଜମିର ମାଲିକ ହେଲେ। ସେମାନଙ୍କର ସୁରକ୍ଷା ଲାଗି ଆଇନ ପ୍ରଣୟନ ହେଲା।

୧୯୫୮ ମସିହାରେ ବିଶ୍ୱନାଥ ସାହୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଗଂଜାମ ଜିଲ୍ଲାର ଶାଖାର ସମ୍ପାଦକଭାବେ ନିର୍ବାଚିତ ହୋଇ ୨୪ବର୍ଷ କାଳ ସେହି ପଦବୀରେ କାର୍ଯ୍ୟ କଲେ। କମ୍ୟୁନିଷ୍ଟ ଦଳକୁ ଭାଙ୍ଗିବା କର୍ମୀମାନଙ୍କୁ ନିରୁତ୍ସାହିତ କରିବା, ମିଥ୍ୟା ମକଦ୍ଦମାରେ ଯୋଡ଼ି ସେମାନଙ୍କ ମନୋବଳ

ଭାଙ୍ଗିବା, ବିଭିନ୍ନ ଭାବେ ପଲୋଭିତ କରିବା ଆଦି ଅପକୌଶଳ ପ୍ରୟୋଗ କରାଯାଇଛି । ତେବେ କୃଷ ଆନ୍ଦୋଳନରେ ଅଗ୍ରଗଣ୍ୟ ଭୂମିକାରେ ରହି କମ୍ୟୁନିଷ୍ଟ ଦଳ ଗଠନରେ ଯେଉଁମାନେ ପ୍ରମୁଖ ଭୂମିକା ନେଇଥିଲେ, ସେମାନେ ଏହି ଅପକୌଶଳର ଶିକାର ହୋଇନାହାନ୍ତି । ସେମାନଙ୍କ ମଧ୍ୟରୁ କେବଳ ବିଜୟ ଚନ୍ଦ୍ର ଦାସ ଦଳ ଛାଡ଼ି ଚାଲିଗଲେ, ଗୋବିନ୍ଦ ପ୍ରଧାନଙ୍କ ବ୍ୟତୀତ ଅନ୍ୟ ସମସ୍ତ ସାଥୀମାନଙ୍କ ସେ ରାଜନୈତିକ ଦୀକ୍ଷାଗୁରୁ ଥିଲେ । ସେ ଦଳ ଛାଡ଼ିଦେଇଥିଲେ ମଧ୍ୟ ତାଙ୍କର ସହିତ ଆଉ କେହି ପ୍ରମୁଖ ଜିଲ୍ଲାସ୍ତରୀୟ ନେତା ସିପିଆଇ ଛାଡ଼ି ନଥିଲେ । ଏହି ପ୍ରମୁଖ ନେତାମାନଙ୍କ ମଧ୍ୟରେ ବିଶ୍ୱନାଥ ସାହୁ ସମସାମୟିକ ବୟସ୍କ ବା କମ ବୟସ୍କ ହୋଇମଧ୍ୟ ସମସ୍ତଙ୍କ ଶ୍ରଦ୍ଧାଭାଜନ ହୋଇପାରିଥିଲେ । ଏବଂ ୨୪ବର୍ଷ କାଳ ଜିଲ୍ଲାର ସମ୍ପାଦକଭାବେ କାର୍ଯ୍ୟନିର୍ବାହ କରିଥିଲେ । କମ୍ୟୁନିଷ୍ଟ କର୍ମୀ ଓ ନେତାଙ୍କ ପ୍ରତି ଘାତ ପ୍ରତିଘାତ ଆସିଛି, କମ୍ୟୁନିଷ୍ଟ ଦଳ ଓ ଏହାର ଶକ୍ତିକୁ ଖର୍ବ କରିବା ଲାଗି ବାହ୍ୟ ଶକ୍ତି ଓ ବିରୋଧୀମାନେ ବହୁବାର ଉଦ୍ୟମ କରିଛନ୍ତି । କିନ୍ତୁ ବିଫଳ ହୋଇଛନ୍ତି । ଜିଲ୍ଲା ସମ୍ପାଦକ ଭାବେ ବିଶ୍ୱନାଥ ସାହୁ ଗାଁ ଗାଁ ବୁଲି କର୍ମୀମାନଙ୍କ ସହ ପ୍ରତ୍ୟକ୍ଷ ତଥା ପାରିବାରିକ ସମ୍ପର୍କ ପ୍ରତିଷ୍ଠା କରିପାରିଥିଲେ । ଫଳରେ ପ୍ରତ୍ୟେକ କର୍ମୀ ଓ ପରିବାର କମ୍ୟୁନିଷ୍ଟ ଦଳକୁ ନିଜର ଦଳ ବୋଲି ଗ୍ରହଣ କରି ନେଇଥିଲେ । ୧୯୬୨ ମସିହାରେ ଚୀନ୍-ଭାରତ ସୀମାନେଇ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେବାପରେ ସିପିଆଇର



ଜାତୀୟ ସ୍ତରରେ ମତାନ୍ତର ସୃଷ୍ଟି ହେଲା, ଯାହାକି ୧୯୬୪ ମସିହାରେ ପାର୍ଟିକୁ ଦୁଇଭାଗରେ ବିଭକ୍ତ କରିଦେଲା । ଦଳେ କେନ୍ଦ୍ରୀୟ କମିଟି ସଭ୍ୟ ଏଥିରୁ ଅଲଗା ହୋଇ ସିପିଆଏମ୍ ଗଠନ କଲେ ଏବଂ ଉଭୟଙ୍କ ମଧ୍ୟରେ ତିକ୍ତତା ଓ ଶତୃତା ବଢ଼ିଲା । ତା'ପରେ ୧୯୬୯ ମସିହାରେ ପୁଣି ସିପିଏମରୁ କିଛି କେନ୍ଦ୍ରୀୟ କମିଟି ସଭ୍ୟ ଅଲଗା ହୋଇ ସିପିଆଇ (ଏମ୍‌ଏଲ୍) ଗଠନ କଲେ । ଏହାପରେ ସେମାନେ ବହୁଭାଗରେ ବିଭକ୍ତ ହୋଇଗଲେ । କମ୍ୟୁନିଷ୍ଟ ଦଳର କ୍ଷତି ହେଲା । ଶାସକ ଦଳ ଏହା ହିଁ ଚାହିଁଥାଏ । କେନ୍ଦ୍ରୀୟ ଓ ରାଜ୍ୟସ୍ତରରେ ହୋଇଥିବା ଏହି ବିଭାଜନରେ ଗଂଜାମ ଜିଲ୍ଲାର କମ୍ୟୁନିଷ୍ଟ ପାର୍ଟି ସମ୍ପୃକ୍ତ ନଥିଲା ।

ଗଞ୍ଜାମ ଜିଲ୍ଲାର ନେତୃତ୍ୱ ସ୍ଥାନୀୟ କୌଣସି କମ୍ୟୁନିଷ୍ଟ ସଭ୍ୟ ଦଳରୁ ଅଲଗା ହୋଇ ନୂଆରେ ଗଢ଼ି ଉଠିଥିବା ଦଳରେ ଯୋଗ ଦେଇନଥିଲେ । ଏହା ଥିଲା ଏହାର ସମ୍ପାଦକ ଥିବା ବିଶ୍ୱନାଥ ସାହୁଙ୍କ ଚତୁରତା ଏବଂ ସମସ୍ତଙ୍କୁ ନେଇ ମିଳିମିଶି କାର୍ଯ୍ୟ କରିବାର କମ୍ୟୁନିଷ୍ଟ ତରିକା । ଜିଲ୍ଲା ନେତୃତ୍ୱମଣ୍ଡଳୀ ମଧ୍ୟରେ ଉତ୍ତମ ବୁଝାମଣା, ସହମତି ସମନ୍ୱୟ ରକ୍ଷା ଓ କର୍ମୀଙ୍କ ମଧ୍ୟରେ ପାର୍ଟିର ନୀତି ଓ କାର୍ଯ୍ୟକ୍ରମ ପ୍ରତି ରହିଥିବା ନିଷ୍ଠା ଓ ସମର୍ପିତ ତ୍ୟାଗଯୋଗୁଁ ସମ୍ଭବ ହୋଇପାରିଥିଲା । ଭାରତୀୟ କମ୍ୟୁନିଷ୍ଟ ଦଳକୁ ବିଭାଜିତ ହୋଇନଥିଲା । ✦

*ସମାଜବିଜ୍ଞାନୀ, ବ୍ରହ୍ମପୁର*

# ଉତ୍କଳର କିମ୍ବଦନ୍ତୀ ପୁରୁଷ ବିଶ୍ୱନାଥ ସାହୁ

ଡାକ୍ତର ହୃଷୀକେଶ ମହାନ୍ତି

ସ୍ୱର୍ଗତ ସାଥୀ ବିଶ୍ୱନାଥ ସାହୁ ଉତ୍କଳର ଜଣେ କିମ୍ବଦନ୍ତୀ ପୁରୁଷ ଥିଲେ, ଏହାକୁ କେହି ଅସ୍ୱୀକାର କରିବେ ନାହିଁ। ସାତଦଶକ ଅର୍ଥାତ୍ ୭୦ବର୍ଷ ଧରି ରାଜ୍ୟ ରାଜନୀତିରେ ସକ୍ରିୟ, ସଚ୍ଚା, ନିର୍ଭୀକଭାବେ କୃଷକ, ଖଟିଖିଆ, ମେହନତୀ ଜନସାଧାରଣଙ୍କ ପ୍ରତିନିଧି ରୂପେ ଦାୟିତ୍ୱ ତୁଲାଇ ଆସିଛନ୍ତି, ଏହା ସର୍ବଜନସମ୍ମତ। ପାଠପଢ଼ା ସମୟରୁ ହିଁ ସେ ରାଜନୀତି ଓ ସାମ୍ୟନୀତି ଆଦର୍ଶକୁ ଆପଣାଇ ନେଇଥିଲେ ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସକ୍ରିୟ ସଦସ୍ୟ ଏବଂ ପରେ ପରେ ଜିଲ୍ଲା, ରାଜ୍ୟ ଏବଂ ସର୍ବଭାରତୀୟ ସ୍ତରରେ ନେତୃତ୍ୱ ନେଇ ଲଢ଼େଇକରି କାରାବରଣ କରିଛନ୍ତି, ନିର୍ଯାତିତ ହୋଇଛନ୍ତି। ପରେ ଶେଷରେ ୯୧ବର୍ଷ ବୟସରେ ସେ ଚିରନିଦ୍ରା ଗଲେ। ସୋଭିଏଟ ରୁଷ ସରକାରଙ୍କ ନିମନ୍ତ୍ରଣ କ୍ରମେ ସୋଭିଏଟ ରୁଷ ପରି ଭ୍ରମଣରେ ଯାଇ ସେହି ରାଷ୍ଟ୍ରର କୃଷକ, ଶ୍ରମିକ ଓ ଜନସାଧାରଣଙ୍କ ସୁଖ ସ୍ୱଚ୍ଛନ୍ଦ ଜୀବନ ଧାରାରେ ଉଦ୍‌ବୁଦ୍ଧ ହୋଇ ଭାରତରେ ସେହି ଅବସ୍ଥା କେବେ ସୃଷ୍ଟି ହେବ, ଏହି ସ୍ୱପ୍ନ ଦେଖୁଥିଲେ। କିନ୍ତୁ ତାଙ୍କର ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା। ଏବଂ ପରେ ସୋଭିଏଟ ରୁଷ ମଧ୍ୟ ଭୁଷୁଡ଼ି ପଡ଼ିଲା। ଏହା ହେଉଛି ବିଡ଼ମ୍ବନାର ବିଷୟ।



ସ୍ୱର୍ଗତ ସାହୁଙ୍କର ଜନ୍ମଠାରୁ ତିରୋଧାନ ପର୍ଯ୍ୟନ୍ତ ମୋର ଧର୍ମପତ୍ନୀ ଶ୍ରୀମତୀ ବିମଳା ମହାନ୍ତି ଉତ୍କଳ ନାୟକ ବିଶ୍ୱନାଥ ସାହୁ ଶିରୋନାମାରେ ଲେଖାରେ ସମସ୍ତ ବିଷୟ ଉଲ୍ଲେଖ କରିଛନ୍ତି। ଏଣୁ ମୁଁ ପୁଣିଥରେ ତାହାକୁ ଦୋହରାଇବାକୁ ଚାହେଁ ନାହିଁ। ସେ କାଳ ଓ ଏ କାଳ ମଧ୍ୟରେ ବହୁ ପ୍ରଭେଦ। ବିଶ୍ୱନାଥ ବାବୁ ଯେତେବେଳେ ନେତା କିମ୍ବା ବିଧାୟକ ହୋଇଥିଲେ, ସେ ସମୟ ଅଲଗାଥିଲା। ଆଜିକାଲି ପ୍ରତିନିଧି ନେତା ଓ ଜନତା ପୃଥକ ପୃଥକ ଦୁଇଟି ଶ୍ରେଣୀରେ ବିଭକ୍ତ ହୋଇଯାଉଛନ୍ତି। ନେତାମାନେ ସାଧାରଣ ଜନତାଙ୍କର ଭୋଟ ଭିକ୍ଷାରେ ସମୃଦ୍ଧ ହେବାପରେ ଜନସାଧାରଣଙ୍କ ସହ ମିଶିବାକୁ ଘୃଣା କରୁଛନ୍ତି। ପୁଣିଥରେ ଭୋଟଭିକ୍ଷାର ସମ୍ମୁଖୀନ ହେବା ପର୍ଯ୍ୟନ୍ତ। ବିଶ୍ୱନାଥ ବାବୁ ଦୁଇ ଦୁଇଥର ବିଧାୟକ ହୋଇଥିଲେ ମଧ୍ୟ ସେ ନିଜକୁ ଜନସାଧାରଣଙ୍କ ଠାରୁ ନିଜକୁ ବଡ଼ ମନେ କରୁନଥିଲେ କିମ୍ବା ଦୂରେଇ ରହୁ ନଥିଲେ। ସେ କୌଣସି ପଦପଦବୀ କିମ୍ବା ବିଧାୟକପଦରେ ରହନ୍ତୁ ବା ନ ରୁହନ୍ତୁ; ଜନସାଧାରଣ ସବୁବେଳେ ତାଙ୍କୁ ପସନ୍ଦ କରୁଥିଲେ ଓ ସମ୍ମାନ ଦେଉଥିଲେ। କୌଣସି ସରକାରୀ କିମ୍ବା ପାର୍ଟି କାମରେ ଗସ୍ତକଲେ ସେ ବଡ଼ ହୋଟେଲ କିମ୍ବା ଡ଼ାକବଙ୍ଗଳାରେ ରହିବାକୁ ଅନିଚ୍ଛା ପ୍ରକାଶକରି ସାଧାରଣତଃ କମ୍ରେଡ଼ଙ୍କ ଘରେ ଆତିଥ୍ୟ ଗ୍ରହଣ କରି ଶାଗ ପଖାଳରେ ସନ୍ତୁଷ୍ଟତା ଲାଭ କରୁଥିଲେ। ଏହାଥିଲା ତାଙ୍କର ମହନୀୟତା, ଏବଂ କମ୍ରେଡ଼ଙ୍କ ସୁଖ ଦୁଃଖ ଓ ଆଳାପ ଆଲୋଚନାରେ ଭାଗୀଦାର ହେଉଥିଲେ।

ସେ ଛତ୍ରପୁର ବିଧାୟକ ଥିଲେ ସତ, କିନ୍ତୁ କାମ କରୁଥିଲେ ସାରା ଓଡ଼ିଶାର। ତାଙ୍କର ଘର, ପର ବୋଲି କିଛି ବାଛ ବିଚାର ନଥିଲା। ତାଙ୍କପାଇଁ ସବୁ

ଏକାକାର । ଛତ୍ରପୁର ଅଂଚଳର ଦାବି କେବଳ ବିଧାନସଭାରେ ସେ ଉପସ୍ଥାପନ କରୁନଥିଲେ । ସେ ଛତ୍ରପୁର, ସାନଖେମୁଣ୍ଡି, ଦିଗପହଣ୍ଡି, ପାଟପୁର, କବିସୂର୍ଯ୍ୟନଗର, ଶେରଗଡ଼, ପିଭଳ, ପୋଲସରା ଖଲିକୋଟ, ଭଂଜନଗର, ଗଞ୍ଜାମ, ପୁରୀ ନିମାପଡ଼ା, କାକଟପୁର, ସମ୍ବଲପୁର, ଫୁଲବାଣୀ ଓ କୋରାପୁଟ ସର୍ବୋପରି ଓଡ଼ିଶା ଜନସାଧାରଣ ଖଟିଖିଆ ମୂଲିଆ, ଶ୍ରମିକ ଓ କୃଷକ, ମହିଳାଙ୍କର ନ୍ୟାଯ୍ୟ ଦାବି ହାସଲ ପାଇଁ ବିଧାନସଭାରେ ଦାବି ଉପସ୍ଥାପନ କରୁଥିଲେ ଏବଂ ବିଭିନ୍ନ ଜନଆନ୍ଦୋଳନରେ ସାମିଲ ହେଉଥିଲେ ।

ଆଜିକାଲି ସାଧାରଣ ନେତାଟିଏ କିମ୍ବା ଜନପ୍ରତିନିଧିଟିଏ ହୋଇଗଲେ ଗାଡ଼ି ବିନା ଘରୁ ବାହାରକୁ ଯାଉନାହାନ୍ତି । କିନ୍ତୁ ବିଶ୍ୱନାଥ ବାବୁ ବିଭିନ୍ନ ଗ୍ରାମକୁ ଚାଲିଚାଲି, ସାଇକେଲ ଦ୍ୱାରା ଏବଂ ଦୂରସ୍ଥାନ ହେଲେ ସାଧାରଣ ବସରେ ଯାଉଥିଲେ ଲୋକଙ୍କର କାର୍ଯ୍ୟ କରିବାପାଇଁ । ଅବଶ୍ୟ ବାର୍ଦ୍ଧକ୍ୟ ଗ୍ରାସିବାପରେ ବିଭିନ୍ନ ସ୍ଥାନକୁ ସେ ଗସ୍ତ କଲାବେଳେ କିଛି କମ୍ରେଡ୍ ତାଙ୍କୁ ସ୍ୱେଚ୍ଛାରେ ନିଜ ନିଜ ବାଇକରେ ଯିବାଆସିବା ପାଇଁ ସହଯୋଗ କରୁଥିଲେ । ବର୍ତ୍ତମାନ ବିଧାୟକଟିଏ ହୋଇଗଲେ ପ୍ରଥମେ କାରଟିଏ ଦରକାର ହେଉଛି । ଏହାପରେ କୋଠାବାଡ଼ି, ବ୍ୟାଙ୍କ ବାଲାନ୍ସ ଅମାପ ଠୁଳ ହୋଇଯାଉଛି । ନିଜର ଆତ୍ମୀୟସ୍ୱଜନଙ୍କ ପାଇଁ ବହୁତ କିଛି କରିବାସହ ପୁଅଝିଅଙ୍କୁ ମଧ୍ୟ ରାଜନୀତିରେ ପ୍ରତିଷ୍ଠିତ କରିବା ପାଇଁ ସଦାଚେଷ୍ଟିତ, କିନ୍ତୁ ବିଶ୍ୱନାଥ ବାବୁଙ୍କ ପାଖରେ ଏହାଥିଲା ପରିପନ୍ଥୀ । ସେ ଦୁଇ ଦୁଇଥର ବିଧାୟକ ରୂପେ ନିର୍ବାଚିତ ହୋଇଥିଲେ ମଧ୍ୟ ନିଜର ପୈତୃକ ଗୃହଟିକୁ ସଜାଡ଼ି ପାରି ନାହାନ୍ତି, ନିଜର ପୁଅ ଝିଅଙ୍କୁ କେଉଁ ସଂସ୍ଥାରେ କିମ୍ବା ରାଜନୈତିକ କ୍ଷେତ୍ରରେ ଥଇଥାନ କରିବାକୁ ପ୍ରୟାସ ମଧ୍ୟ କରିନାହାନ୍ତି । ବ୍ରହ୍ମପୁର କିମ୍ବା ଭୁବନେଶ୍ୱରରେ ଘର ଖଣ୍ଡିଏ କରିପାରି ନାହାନ୍ତି, "ବାବା ବିଶ୍ୱନାଇ'ଙ୍କ ଭଳି ବିଶ୍ୱନାଥବାବୁ ମଧ୍ୟ ଲଙ୍ଗଳା ହୋଇ ଚାଲିଗଲେ । ଏଥିରୁ ଆମେ ଅନୁମେୟ କରିବା କଥା ସେ କେତେ ସଚ୍ଚୋଟ ଥିଲେ ଏବଂ ଦୁର୍ନୀତିଠାରୁ କେତେ ଊର୍ଦ୍ଧ୍ୱରେ, ଏହା ଶୁଣିବା ଲୋକେ ବିଶ୍ୱାସ ନକଲେ




ସ୍ମୃତିରେ ---କମ୍ରେଡ୍ ବିଶ୍ୱନାଥ ସାହୁ

ମଧ୍ୟ ନିରାଟ ସତ୍ୟ । ଶିକ୍ଷା ଓ ଶିକ୍ଷାନୁଷ୍ଠାନ ପ୍ରତି ତାଙ୍କର ବିଶେଷ ଦୁର୍ବଳତା ଥିଲା । ଶିକ୍ଷାର ବିକାଶ ନଥିଲେ ସାମ୍ୟବାଦ ପ୍ରତିଷ୍ଠା ଅସମ୍ଭବ ବୋଲି ସେ କହୁଥିଲେ । ତେଣୁ ଗଞ୍ଜାମ ଜିଲ୍ଲା କାହିଁକି , ଓଡ଼ିଶାର ବିଭିନ୍ନ ସ୍ଥାନରେ ବହୁ ଶିକ୍ଷାନୁଷ୍ଠାନ, ହାଇସ୍କୁଲ କଲେଜ ପ୍ରତିଷ୍ଠା କରିଛନ୍ତି ।

ମହିଳାମାନଙ୍କର ଶିକ୍ଷା, ଧନ୍ଦାମୂଳକ ଶିକ୍ଷା, ଆତ୍ମନିଯୁକ୍ତି ପାଇଁ ବିଭିନ୍ନ ଉଦ୍ୟମ କରିଛନ୍ତି ଓ ମହିଳାମାନଙ୍କୁ ଏଥିପାଇଁ ପ୍ରୋତ୍ସାହନ ଦେଇ ଆସୁଥିଲେ । ଏପରି କଥା ପିତଳରେ ପ୍ରତିଷ୍ଠିତ ଧର୍ମାନନ୍ଦ ମହିଳା ସମିତିର ବାର୍ଷିକ ଉତ୍ସବରେ ବହୁବାର ଅତିଥି ରୂପେ ଯୋଗଦେଇ ଆମକୁ ଓ ମହିଳା ମାନଙ୍କୁ ଦିଗଦର୍ଶନ ଦେବା ସହ ମହିଳାମାନଙ୍କୁ ଓ ମହିଳା ସମିତିକୁ କିପରି ସରକାରୀ ସାହାଯ୍ୟ ଓ ସହାୟତା ମିଳିବ ସେଥିପାଇଁ ମଧ୍ୟ ଅହରହ ଉଦ୍ୟମ ଜାରୀ ରଖିଥିଲେ । ସେ ମହିଳାମାନଙ୍କ ପ୍ରତି ଦରଦୀ ଥିଲେ ।

ସ୍ୱର୍ଗତ ବିଶ୍ୱନାଥ ବାବୁଙ୍କ ଜୀବନୀ ସୀମିତ କାଗଜ କଲମରେ ପର୍ଯ୍ୟାଲୋଚନା କରିବା ସମ୍ଭବପର ନୁହେଁ । ଜିଲ୍ଲାର କେତେକ ନେତୃତ୍ୱ ନେଉଥିବା ବ୍ୟକ୍ତି ନୀତି ଓ ଆଦର୍ଶକୁ ଜଳାଂଜଳି ଦେଇ ନିଜର ସ୍ୱାର୍ଥପାଇଁ ଏବଂ କ୍ଷମତାପାଇଁ ଦଳ ପରିବର୍ତ୍ତନ ଓ ଦଳବିରୋଧୀ କାର୍ଯ୍ୟକଳାପ କରି ଦଳକୁ ଉଜୁଡ଼ାଇ ଦେଇ ଶ୍ରୀହୀନ କରିଦେବା ଘଟଣା ସ୍ୱର୍ଗତ ସାହୁଙ୍କୁ ଶେଷଜୀବନରେ ମ୍ରିୟମାଣ କରିଥିଲା । ସେ ଯାହାହେଉ ଆମ ପାଖରେ ସେ ଆଉ ନାହାନ୍ତି, ଏକାନବେ ବର୍ଷ ସମୟରେ ଆଜୀବନ ସଂଗ୍ରାମୀଜଣକ ଶେଷ ବିଦାୟ ନେଇ ଚାଲିଗଲେ । ଅନେକ ଅପୂରଣୀୟ ଜାଗା ଅଜାଗାରେ ଖୋଇ, ଆମେ ତାଙ୍କୁ କେତେ କାର୍ଯ୍ୟକାରୀ କରିପାରୁଛେ ତାହାହିଁ ବିଚାର୍ଯ୍ୟ ।

ପରିଶେଷରେ ମୁଁ ସ୍ୱର୍ଗତ ବିଶ୍ୱନାଥ ସାହୁଙ୍କ ପ୍ରତି ପ୍ରଥମ ବାର୍ଷିକ ସ୍ମୃତିଚାରଣ ଅବସରରେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।





# ସେ ଦିନ ଓ ଆଜି

ଏନ୍. ନାରାୟଣ ରେଡ୍ଡି

୧୯୮୦ ସାଲ କଥା, ବିଧାନସଭା ନିର୍ବାଚନ ସରିଥାଏ। ସାଥୀ ବିଶ୍ୱନାଥ ସାହୁ ଆମଗାଁ (ଚମାଖଣ୍ଡି) ଦିନେ ଖରାବେଳେ ଆସିଗଲେ। ବାପା ମୋର ବଗିଚାରେ ଥିବାଜାଣି ଗାଁ ଆର ପାଖରେ ଥିବା ବଗିଚାକୁ ଆସିଗଲେ। ଶଗଡ଼େ ଜମିର ବଗିଚା, କିଛି ନଡ଼ିଆ, କଦଳୀ, ଛୋଟ ଦୁଇଟି ଆମ୍ବଗଛ ସହ ଦୁଇ ତିନୋଟି ସଜନା ଗଛ, ଗୋଟାଏ ସପେଟା ଗଛ ସହ ଛୋଟ ଏକ କୂଅ। ବାସ୍ ଏତକ ଜାଗାରେ ଛୋଟ ଏକବଖରା ଘରରେ ଚାରି ପାଂଚଟି ଗାଈ, ଦଶ କି ବାର କୁକୁଡ଼ା ସହ ଗୋଟାଏ କୁକୁରକୁ ଧରି ବାପା ମୋର ସେଠାରେ ରାତି ଦିନ ରହନ୍ତି। ପିଲାମାନେ ଥଟ୍ଟାରେ ସେ ପିନ୍ଧିଥିବା ଛୋଟ ହାଫ୍ ପ୍ୟାଂଟ ଓ ଟୋପିକୁ ଦେଖି ଗାନ୍ଧୀ ବୁଢ଼ା ବୋଲି ଡାକନ୍ତି।

ମୋ ବାପା, ବିଶ୍ୱନାଥ ବାବୁଙ୍କୁ ଦେଖି ଖୁସି ହେଲେ, ଏତେ ଖରାରେ ଆସିଗଲେ, ପଚାରିଲେ। ଖାଇବା କଥା ବୁଝିଲେ। ବିଶ୍ୱନାଥ ବାବୁ ଖାଇଛି ବୋଲି ଉତର ଦେଲେ। ବାପା ଏକ ବାଙ୍କୁଡା ବାଡି ସାହାଯ୍ୟରେ ଗଛରୁ ଦୁଇଗୋଟି ପଇଡ ତୋଳି ପିଇବାକୁ ଦେଲେ। ବାପା କହିଲେ ସନ୍ଧ୍ୟା ୫ଟା ବେଳେ ଗାଁ ବୁଲିବା, ବିଶ୍ୱନାଥ ବାବୁ ସେତେବେଳେ ଦ୍ୱିତୀୟ ବାର ବିଧାନସଭାକୁ ନିର୍ବାଚିତ ହୋଇଥାନ୍ତି। ସେ ତତ୍‌କ୍ଷଣାତ୍ ବାପାଙ୍କୁ ହସି ହସି କହିଲେ ହେଉ ସମୟ ହେଲାଣି ତୁମେ ଘରକୁ ଯାଇ ଖାଇ ଆସ। ବାପା ଘରକୁ ଗଲେ।




ବିଶ୍ୱନାଥ ବାବୁ ସେଠାରେ ଥିବା ଦଉଡି ଖଟରେ ଗଡ଼ପଡ଼ ହେଲେ। ମୁଁ ଖଟରେ ତାଙ୍କ ପାଦପଟେ ବସିଲି। ଏଥର ଆରମ୍ଭ ହେଲା - ଦୀର୍ଘ ଇତିହାସ।

ସେ କହି ଚାଲିଥାନ୍ତି, ମୁଁ ଶୁଣୁଥାଏ ମଝିରେ ମଝିରେ ଗପ ପରି ହୁଁ ହୁଁ ମାରୁଥାଏ। ବୁଝିଲୁ ନାରାୟଣ! ବାପାଙ୍କର ମୋର କେତେ ବର୍ଷର ସଂପର୍କ ଜାଣିଛୁ। ମୁଁ ଉତର ଦେବା ପୂର୍ବରୁ ସେ କହିଦେଲେ ୧୯୪୮ ମସିହାଠାରୁ, ଆଜକୁ କେତେବର୍ଷ ହେଲା? ମୁଁ ଉତର ଦେଲି ଆଜ୍ଞା ୩୨ବର୍ଷ ହେଲା, ସେ ପୁଣି ପ୍ରଶ୍ନ କଲେ ତୋତେ ଏବେ କେତେ ବର୍ଷ ହେଲା? ମୁ ଉତର ଦେଲି ୨୫ବର୍ଷ ହେଲା। ହଁ ତୁ ଜନ୍ମ ହେଇନୁ କି ପାଣ୍ଡା ମଧ ଜନ୍ମ ହୋଇନାହିଁ। ହରିବନ୍ଧୁ ଛୋଟପିଲା। ବାପା ମୋଠାରୁ ଦୁଇବର୍ଷ ବଡ଼। ତୁମ ଜେଜେ ନାଗିରେଡ୍ଡି ଲାଛୁମାୟା। ତୁ ଦେଖିଛୁ? ମୁଁ ପୁଣି ହଁ କଲି, କାହିଁ କହିଲୁ ସେ କିପରି ଥିବେ, ମୁଁ କହିଲି ତାଙ୍ଗେ ବୁଢ଼ା ପରିଥିବେ। ସେ ଚଟାଳକିନା ଉଠିପଡି ମୋ ମୁହଁକୁ ଚାହିଁଲେ, ତୁ ତାଙ୍ଗେ ବୁଢ଼ାକୁ କେଉଁଠେ ଦେଖିଲୁ। ମୁଁ କହିଲି ମୋତେ ଲକ୍ଷ୍ମଣ ମହାପାତ୍ର ୧୯୭୫ସାଲରେ ତାଙ୍ଗେଙ୍କ ଏକ ଫୋଟ ଦେଇଥିଲେ ମୁଁ କାଚ ବନ୍ଧାଇ ପରେ ରଖିଛି। ତା'ପର ଆମ କଥାର ବିଷୟ ବସ୍ତୁ ବଦଳିଗଲା।

ସ୍ମୃତିରେ ...କମ୍ରେଡ୍ ବିଶ୍ୱନାଥ ସାହୁ

ବିଶ୍ୱନାଥ ବାବୁ ତାଙ୍କ ସମ୍ପର୍କରେ ଅନେକ ଘଟଣାବଳୀ, ପାର୍ଟିକ୍ଲାସ, ତାଙ୍କ ଲେଖିଥିବା ବହି, ତାଙ୍କ ଜଣେ ମହାନ ପଣ୍ଡିତ; ଏକଥା ସେ ମୋତେ ବୁଝାଉଥିଲା ବେଳେ ସେ ଅନେକ ପ୍ରଶ୍ନ ପଚାରୁ ଥିଲେ ମୁଁ ଉତର ଦେଉଥିଲି। ପାର୍ଟିର କେଉଁ କେଉଁ ବହି ପଢିଛୁ ? ମୁଁ ଉତର ଦେଲି 'କମ୍ୟୁନିଷ୍ଟ ଇସ୍ତାହାର' , 'ସାମ୍ୟବାଦ କାହାକୁ କହନ୍ତି', 'ମାର୍କ୍ସବାଦର ମୂଳତତ୍ୱ' ଇତ୍ୟାଦି। ତାଙ୍କର ପ୍ରଶ୍ନ ଥିଲା ଗଙ୍ଗାନଦୀ କୂଳେ କେଉଁ ସହର, ଯମୁନା ନିକଟରେ କେଉଁ ସହର, କାବେରୀ, କ୍ରିଷ୍ଣା ଇତ୍ୟାଦି ନଦୀ ତଟରେ କେଉଁ କେଉଁ ସହର ତାଙ୍କର ପ୍ରଶ୍ନର ଉଦ୍ଦେଶ୍ୟ ଥିଲା। ମଣିଷ ଆଦିମ କାଳରେ ବଣ, ଜଙ୍ଗଲଛାଡ଼ି ଚାରଣ ଭୂମିର ଅନ୍ୱେଷଣରେ ସମତଳ ଭୂମି, ନଦୀ ତଟରେ ରହିବାକୁ ବାଛିନେଲା। ଆଦିମ ସାମ୍ୟବାଦୀ ସମାଜ, ଦାସ ସମାଜ, ସାମନ୍ତବାଦୀ ସମାଜ। ବର୍ତମାନ ଆମେ ରହୁଥିବା ପୁଂଜିବାଦୀ ସମାଜ ଇତ୍ୟାଦି ଦୀର୍ଘସମୟ ମୁଁ ବିଶ୍ୱନାଥବାବୁଙ୍କ ଠାରୁ ଶୁଣିଲି। ସମୟ ଜଣା ପଡୁନଥିଲା, ବାପା ଆସି ପହଂଚିଗଲେ। ବାପା ବିଶ୍ୱନାଥ ବାବୁଙ୍କୁ କହିଲେ, ଗାଁ ବୁଲିବାକୁ ଯିବା, ବିଶ୍ୱନାଥବାବୁ କହିଲେ ଆମ ଗାଁ ଆଉ ବୁଲିବା କଣ, ମୁଁ ପରେ ଆସିବି ଗାଁର ଉଭୟ ଦଳକୁ ଡାକି ବସାଇବା ଗାଁ ସମସ୍ୟା ହାଇସ୍କୁଲ୍ ବିଷୟ ସବୁନେଇ ଆଲୋଚନା କରିବା। ଆଜି ମୁନିଷିପେଣ୍ଠ, ମାଧପୁର ପଟେ ଯିବି, ସେମାନେ ଅପେକ୍ଷା କରିଥିବେ। ଫେରିଲାବେଳେ ବାପାଙ୍କୁ କହିଲେ ନାରାୟଣ ଆମପରେ ନେତା ହେବ। ବାପା ହସିଦେଲେ ହରିବନ୍ଧୁ ଶିକ୍ଷକ ହୋଇଛି, ପାଣ୍ଡୀ ଚାଷକାମ ଦେଖୁଛି, ନାରାୟଣ ପାର୍ଟି କାମ ଦେଖିବ..........।

ମୁଁ ପାର୍ଟି କାମ ଦେଖୁଛି- ୧୯୭୪ ସାଲରେ ପାର୍ଟିର ଶାଖା ବୈଠକ ପଂଚାୟତ ଅଫିସ୍ ନିକଟରେ ଅନୁଷ୍ଠିତ ହୋଇଥିଲା। ମୁଁ ସଭ୍ୟ ପଦ ପାଇଁ ଆବେଦନ ପତ୍ର ଦେଲି କିନ୍ତୁ ମୋତେ ସଭ୍ୟପଦ ମିଳିଲା ୧୯୭୫ରେ। ମଝିଆ ଭାଇନା ୧୯୭୪ ହିଁ ପାର୍ଟିକାର୍ଡ ପାଇଗଲେ ସାଥି ଲକ୍ଷ୍ମଣ ମହାପାତ୍ର, ସାଥି ହରିକୃଷ୍ଣ ପାଣିଗ୍ରାହି, ସାଥି ଆର୍. ଜଗାରାଓ ସହ ମୋ ବଡ଼ଭାଇ ସ୍ୱର୍ଗୀୟ ହରିବନ୍ଧୁ ରେଡି ଉପସ୍ଥିତ ଥିଲେ। ୧୯୭୫ଠାରୁ ଆଜି ଦୀର୍ଘ ୪୨ବର୍ଷ କମ୍ୟୁନିଷ୍ଟ ଜୀବନ ଅତିବାହିତ କଲା ମଧ୍ୟରେ ଅନେକ ପ୍ରଶଂସା, ଅପବାଦ, ମକଦ୍ଦମା, ଜେଲ୍, ଜନ ଆନ୍ଦୋଳନର ଅନୁଭୂତି ମଧ୍ୟରେ ଅନେକ ଅଙ୍ଗେଲିଭା ଅନୁଭବ ଅତିକ୍ରମ କରି ଆସିଲି। ମୋ ନେତା ବିଶ୍ୱନାଥବାବୁ ଯାହା ସେହିଦିନ ସମାଜ ବିକାଶର ସ୍ତର ବୁଝାଇଥିଲେ ତାକୁ ମୁଁ ସେହି ପ୍ରକାରେ ହିଁ ବୁଝିଲି, ଆଜି ମଧ୍ୟ ସେହି ଶିକ୍ଷା ପ୍ରତି ଆନ୍ତରିକ ବିଶ୍ୱାସ ରଖି ପାର୍ଟି ସଂଗଠନ କାର୍ଯ୍ୟରେ ଚାଲିଛି। ମାର୍କ୍ସବାଦ ଯେ କେତେ ସଠିକ୍ ଓ ବୈଜ୍ଞାନିକ ଦୃଷ୍ଟିରୁ କେତେ ନିର୍ଭୁଲ୍; ଆମେ ସମସ୍ତେ ଏ ଦିଗରେ ସଚେତନ। ମାର୍କ୍ସବାଦ ଉପରେ ବିଶ୍ୱାସ ନଥିଲେ. ଜଣେ ଦୀର୍ଘଦିନ କମ୍ୟୁନିଷ୍ଟ ଦଳରେ ରହିପାରିବ ନାହିଁ। ଆମ ଆଖିଆଗରେ ଦେଖିଛୁ, ଯେଉଁମାନେ ପାର୍ଟି ଛାଡି ଯାଇଛନ୍ତି। ଏକେତ ମାର୍କ୍ସବାଦ୍ ତତ୍ୱପ୍ରତି ସଚେତନତାର ଅଭାବ, ନାହିଁ ତ ବ୍ୟକ୍ତିଗତ ସ୍ୱାର୍ଥ ହାସଲପାଇଁ ଏ ପ୍ରକାର ବିଚ୍ୟୁତି ହୋଇଥାଏ।

ଆମ ପାର୍ଟିର ଗୋବିନ୍ଦ ପ୍ରଧାନ, ହରିହର ଦାସ, ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ,ସଦାନନ୍ଦ ମହାନ୍ତି,ଲକ୍ଷ୍ମଣ ମହାପାତ୍ର, ସୂର୍ଯ୍ୟନାରାୟଣ ଆଚାରୀ, ଉଦୟ ଚନ୍ଦ୍ର ପାତ୍ର, ମହନ୍ତର ନାୟକ,କାଳିଚରଣ ପଣ୍ଡା,ରବି ପଲେଇ, ସୁବାରାଓ ପାତ୍ର, ଉଦୟ ବିଶ୍ୱାଳ, ଉଦୟ ମହାଙ୍କୁଡ,ଶ୍ରୀ ହରି ପ୍ରଧାନ, ନନ୍ଦପ୍ରଧାନ,ବୈଷ୍ଣବ ରେଡି, ଚନ୍ଦ୍ରୟା ରେଡି, ରାମଚନ୍ଦ୍ର ପଟ୍ଟନାୟକଙ୍କ ପରି ଶହ ଶହ ସାଥି ଜୀବନର ଶେଷ ଦିନ ପର୍ଯ୍ୟନ୍ତ ପାର୍ଟି ଛାଡି ନାହାନ୍ତି। ଆଜି ମଧ୍ୟ ଲୋକଙ୍କ ମଧ୍ୟରେ ଏହି ପ୍ରୟାତ ସାଥିଙ୍କ ବିଷୟରେ ଆଲୋଚନା ହେଉଛି। ସେମାନଙ୍କ ତ୍ୟାଗ, ସେମାନଙ୍କ ଦେଶପ୍ରେମ ପାଇଁ ସେମାନେ ଅମର ରହିଛନ୍ତି।

କିନ୍ତୁ ଆଜି ଭାରତୀୟ ସମାଜରେ ଯାହା ଘଟୁଛି- ମୋତେ ସେହି ଦିନ, ଯେଉଁ କେତେ ଘଂଟା ବିଶ୍ୱନାଥବାବୁ ବୁଝାଉଥିଲେ- ସେହି ଉପାଦେୟ ଶିକ୍ଷାରୁ ମୁଁ ଏପରି ଆଜିର ଅବସ୍ଥାକୁ ବୁଝୁଛି, ସେହି କଥା ଏଠାରେ ଉଲ୍ଲେଖ କରୁଛି......

ଆମେରିକାର୍ସ ସଭ୍ୟତାର କ୍ରମବିକାଶ ଧାରାରେ ସମାଜ ନାନା ସାଂସ୍କୃତିକ ସ୍ତର ଦେଇ ବିକାଶ ଲାଭ କରୁଛି। ଏହି ବିକାଶ ଧାରାରେ ପ୍ରତ୍ୟେକ ଯୁଗରେ ମାର୍କ୍ସ, ମାର୍ଟିନ ଲୁଥରକିଙ୍ଗ୍, ମହାତ୍ମାଗାନ୍ଧୀଙ୍କ ଠାରୁ ସହିଦ ଭଗତସିଂ ପର୍ଯ୍ୟନ୍ତ ଅନେକ ବୈପ୍ଳବିକ ଚିନ୍ତାନାୟକ ଜନ୍ମନେଇ ସଭ୍ୟତାର ରଥଚକକୁ ଆଗେଇ ନେଇଛନ୍ତି। ଇତିହାସର ବିଭିନ୍ନ ସନ୍ଧିକ୍ଷଣରେ କେତେଜଣ ବିପ୍ଳବୀ ସମାଜର ସାଂସ୍କୃତିକ ବିକାଶ ପାଇଁ ବୈଚାରିକ ଆଲୋଡ଼ନ ସୃଷ୍ଟି କରିଛନ୍ତି। ତାହା ସମସାମୟିକ ସମାଜର ଅନ୍ଧବିଶ୍ୱାସ ଉପରେ କୁଠାରାଘାତ କରିଥାଏ ଏବଂ ସେହି ସମାଜରେ ଥିବା ରକ୍ଷଣଶୀଳ,ପରିବର୍ତ୍ତନବିରୋଧୀ ଓ ସ୍ୱାର୍ଥନ୍ୱେଷୀ ବ୍ୟକ୍ତିଗଣ ସଂସ୍କାରବାଦୀ ବୈଜ୍ଞାନିକ ଦୃଷ୍ଟି କୋଣକୁ ବିରୋଧ କରି ଆସିଛନ୍ତି। ସେମାନଙ୍କ ଯୁକ୍ତି ହେଲା ଧର୍ମଗ୍ରନ୍ଥରେ ବର୍ଣ୍ଣିତ କାଳ୍ପନିକ କାହାଣୀ ସମ୍ପୃକ୍ତ ଧର୍ମବିଶ୍ୱାସ ଗୁଡିକ ଚିରନ୍ତନ, ଶାଶ୍ୱତ ଓ ଈଶ୍ୱରୀୟ ନିର୍ଦ୍ଦେଶ ଏହାକୁ ଅସ୍ୱୀକାର କରିବା ଅଧିକାର ସାମାନ୍ୟ ମଣିଷ ଶକ୍ତିର ବାହାରେ। ଏଣୁ ଏଠାରେ ଧର୍ମ ଓ ବୈଜ୍ଞାନିକ ବିଚାର ମଧ୍ୟରେ ସଂଘର୍ଷ ଆରମ୍ଭ ହୁଏ।

ବହୁ ପ୍ରାଚୀନକାଳରେ ପୃଥିବୀର ବିଭିନ୍ନ ଭୌଗଳିକ ଭୂଖଣ୍ଡରେ ବିଭିନ୍ନ ଧର୍ମ ସୃଷ୍ଟିହୋଇ ଜନଗଣଙ୍କ ମଧ୍ୟରେ ଭାବଗତ ଐକ୍ୟ ସ୍ଥାପନାରେ ସକ୍ଷମ ହୋଇଛି। ଏହା ଗୋଟିଏ ସୀମିତ ପରିବେଶ ମଧ୍ୟରେ ବଂଚୁଥିବା କିଛି ପ୍ରାକୃତିକ ଘଟଣାର ସମ୍ମୁଖୀନ ହୋଇଥିବା କିଛି ଗୋଷ୍ଠୀର ବିଶ୍ୱାସ, ଯାହାକି ସ୍ୱାଭାବିକ ପ୍ରକୃତିର ବିଶାଳତା ଓ ବୈଚିତ୍ର୍ୟକୁ ଦେଖି କିଛି କିଛି ତା' ମନରେ ବିଶ୍ୱାସ ବସା ବାନ୍ଧିଲା, ଧରି ନିଆଯାଉ- ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ଜଳ, ବୃକ୍ଷ, ଆକାଶ ଇତ୍ୟାଦିକୁ ଦେବତ୍ୱର ଆସନ ଦେଇ ପୂଜା ଆରାଧନା କଲା। ତା ମନରେ ବିଶ୍ୱାସ ଜନ୍ମିଲା ପୂଜାକରିବା ଫଳରେ ସୂର୍ଯ୍ୟର ଟାଣ ତେଜ କମିଯିବ, ଅଗ୍ନି ଦେବତା ତାକୁ ଜାଳିବ ନାହିଁ କିମ୍ବା ଜଳ ସମୟେ ସମୟେ ଗତିପଥ ବଦଳାଇ ତାକୁ ତା'ତାର ସହଚରଙ୍କୁ ଭସାଇ ନେଇଯାଉଛି, ଗଛ ପବନରେ ଭାଙ୍ଗି ତା' ଉପରେ ପଡିଯାଉଛି, ଏହିସବୁ ଦୁର୍ବିପାକରୁ ସେ ରକ୍ଷାପାଇବ। ସେତେବେଳର ବିଶ୍ୱାସ ସେହି ସମୟର ଲୋକଙ୍କର ଅଜ୍ଞାନତା ଓ ସରଳତାର ପରିପ୍ରକାଶ ମାତ୍ର। ସେହି ସମୟରେ ବିଭିନ୍ନ ସ୍ଥାନର ପ୍ରାକୃତିକ ପରିବେଶ, ଲୋକଙ୍କର ଚଳନି ଓ ବିଶ୍ୱାସକୁ ନେଇ କ୍ରମେ କ୍ରମେ ଧର୍ମର ଉତ୍ଥାନ ହେଲା ନିର୍ଦ୍ଦିଷ୍ଟ ଗୋଷ୍ଠୀ ତାକୁ ପ୍ରଚାର ମାଧ୍ୟମରେ ବ୍ୟାପକ ଅଂଚଳରେ ପ୍ରସାର କଲେ। ପରବର୍ତ୍ତୀ ସମୟରେ ଧର୍ମ ଏକ ସାମାଜିକ ବ୍ୟବସ୍ଥାଭାବେ ମଣିଷ ସମାଜର ଜୀବନ ଧାରାକୁ ପ୍ରଭାବିତ କଲା।




ସ୍ମୃତିରେ ---କମ୍ରେଡ୍ ବିଶ୍ୱନାଥ ସାହୁ

କାଳକ୍ରମେ ଧର୍ମ ପ୍ରଚାରକ ନିଜର ସ୍ୱାର୍ଥ ସିଦ୍ଧି ପାଇଁ ଅନେକ କୁସଂସ୍କାର ଓ କପୋଳକଳ୍ପିତ ଧାରଣା ସୃଷ୍ଟି କଲା। ତନ୍ତ୍ର, ମନ୍ତ୍ର, ଭୂତ, ପ୍ରେତ, ଗୁଣିଗାରେଡ଼ି, ଯଜ୍ଞ, ବଳିପ୍ରଥା, ପୁରୋହିତଙ୍କ ହୁକୁମ୍ ଇତ୍ୟାଦି ଯାହାର ଫଳରେ ସାଇବାବା ଠାରୁ ଆରମ୍ଭକରି ସୁରବାବା, ସାରଥି ବାବା ପର୍ଯ୍ୟନ୍ତ ଦେଶରେ ହଜାର ହଜାର ବାବା ଉଭା ହୋଇଗଲେ। ଅଧ୍ୟାପକ, ଡକ୍ଟର, ଇଂଜିନିୟର ଠାରୁ ଆଇ.ଏ.ଏସ୍, ଆଇ୍.ପି.ଏସ୍ ଅଫିସର ,ରାଜନେତା ସମସ୍ତେ ସେମାନଙ୍କ ସାନିଧ ଲାଭପାଇଁ ଚେଲା ହୋଇ ବାହାରି ପଡିଲେ।

ପ୍ରତ୍ୟେକ ଧର୍ମ ନିଜର ମତକୁ ହିଁ ପ୍ରକୃତ ତଥା ଶ୍ରେଷ୍ଠ ବା ଈଶ୍ୱରଙ୍କ ବାଣୀ ବୋଲି ଦାବୀ କଲେ। ସେହି ମତବାଦର ବିରେଧ କଲେ ତାହାକୁ ଈଶ୍ୱରବିରୋଧୀ ବା ଧର୍ମଦ୍ରୋହୀ, ନାସ୍ତିକ କହି ଦଣ୍ଡବିଧାନ ଘୋଷଣା କଲେ। ସେତେବେଳର ଅବୈଜ୍ଞାନିକ ମତବାଦକୁ ବିରୋଧ କରି ଯୀଶୁଖ୍ରୀଷ୍ଟ, ସକ୍ରେଟିସ୍ ପ୍ରଭୃତି ମୃତ୍ୟୁଦଣ୍ଡ ପାଇଥିଲେ, ବୁଦ୍ଧ ଦେବଙ୍କର ମତକୁ ସେତେବେଳର ରକ୍ଷଣଶୀଳ ହିନ୍ଦୁ ସମାଜ ଗ୍ରହଣ କରିପାରି ନଥିଲା। ବୁଦ୍ଧଦେବ ହେଉଛନ୍ତି ସେ ସମୟର ଜାତିପ୍ରଥା, ଅନ୍ଧବିଶ୍ୱାସ, କୁସଂସ୍କାରବିରୋଧି, ପ୍ରଥମନିରୀଶ୍ୱରବାଦୀ ବା ବସ୍ତୁବାଦୀ। ଆମେ ଜାଣୁ ବୁଦ୍ଧପୂର୍ଣ୍ଣିମା, ଗୌତମ ବୁଦ୍ଧଙ୍କ ଜୟନ୍ତୀ, ବୁଦ୍ଧଙ୍କ ଜନ୍ମ ଦିନଟି ପ୍ରାମାଣିକ (ଖ୍ରୀ.ପୂ୫୬୩), ଶ୍ରୀରାମଙ୍କ ଜନ୍ମ, ଶ୍ରୀକୃଷ୍ଣଙ୍କ ଜନ୍ମ ପୌରାଣିକ। ଦ୍ୱାପରେ କୃଷ୍ଣ, ତ୍ରେତୟାରେ ରାମ ଇତ୍ୟାଦି ପୁରାଣରେ ବର୍ଣ୍ଣିତ। ପୁରାଣର କାହାଣୀକୁ ଇତିହାସର ରୂପ ଦେବାକୁ ଏକବିଂଶ ଶତାବ୍ଦୀରେ ମଧ୍ୟ ଉଦ୍ୟମ ଚାଲିଛି। ସେହିଦିନ ଯେପରି ସଂସ୍କୃତ ଭାଷା ଶାସକ ଶ୍ରେଣୀର ଭାଷା ଥିଲା। ଆଜି ମଧ୍ୟ କେତେଜଣ ଆମଦେଶରେ ଶାସନରେ ରହି ହିନ୍ଦୁ ଧର୍ମକୁ ନିଜର ଧର୍ମ ଆଉ ଯେତେସବୁ ଦେଶର ଆମେ ନାଗରିକ ଅଛୁ ତାକୁ ମାନି ଚଳିବାକୁ ହେବ ଏକଥା କହୁଛନ୍ତି। ସେମାନଙ୍କ ମତରେ ଦେଶ ଏକ ରାଷ୍ଟ୍ର , ଏକ ସଂସ୍କୃତି, ଏକ ଭାଷା ,ଏକ ଧର୍ମ, ଏକ ଜାତି । ଏକଥା ସମ୍ଭବ ଜର୍ମାନୀ ଓ ଇଟାଲି ଦେଶରେ , ଏ ସଂକୀର୍ଣ୍ଣ ରାଷ୍ଟ୍ରବାଦ। ତାହା ଭାରତ ଭଳି ବିଶାଳ ଦେଶରେ ସମ୍ଭବ ନୁହେଁ। ଭାରତର ସ୍ୱାଧୀନତା ସଂଗ୍ରାମକାଳୀନ ରାଷ୍ଟ୍ରବାଦ୍ ହିଁ ଆମ ରାଷ୍ଟ୍ରବାଦ। ଅନେକତା ମଧ୍ୟରେ ଏକତା ହିଁ ଆମ ଦେଶର ରାଷ୍ଟ୍ରବାଦ । ଆମ ରାଷ୍ଟ୍ରବାଦ ଦେଶ ଭିତରେ ଭିନ୍ନ ଜାତି, କ୍ଷେତ୍ର ଓ ଧର୍ମାବଲମ୍ବୀଙ୍କୁ ଯୋଡୁଛି। ଭିନ୍ନ କରିବା କିମ୍ବା ଘୃଣା କରିବା ନୁହଁ। ଏକଥା ଯିଏ କହିବ ସେ ରାଷ୍ଟ୍ରଦୋହୀ। ଜବହାରଲାଲ ନେହୁରୁ ବିଶ୍ୱବିଦ୍ୟାଳୟର ଛାତ୍ର ନେତା କହ୍ନେୟା କୁମାର ହେଉ କି ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଛାତ୍ରନେତ୍ରୀ ଗୁରୁମେହର କୌର ହେଉ; ସେମାନଙ୍କ ବିରୁଦ୍ଧରେ ଆଇ.ପି.ସି ର ଧାରା ୧୨୪(କ) ଦେଶଦ୍ରୋହୀ ଦଫା ଲାଗିବ। କାହିଁକି ଏ ଅସହିଷ୍ଣୁତା ? କଣ ସ୍ୱାଧୀନ ଭାରତରେ ନାଗରିକ ତାର ଭିନ୍ନମତ ରଖିପାରିବ ନାହିଁ, ତାର ବାକ୍ ସ୍ୱାଧିନତା ରହିବ ନାହିଁ। ଗଣତାନ୍ତ୍ରିକ ଅଧିକାର କଣ ଗୈରିକତନ୍ତ୍ରର ଧୂଳିସାତ ହେବ। ଏଥିପାଇଁ କଣ ବିଶ୍ୱନାଥବାବୁଙ୍କୁ ପରି ହଜାର ହଜାର ଦେଶଭକ୍ତ ପାଠ ଛାଡ଼ି, ଘର ଛାଡ଼ି ଦେଶର ସ୍ୱାଧିନତା ସଂଗ୍ରାମକୁ ଡ଼େଇଁ ପଡ଼ିଥିଲେ ? ବିଶ୍ୱନାଥବାବୁ ଏହି ପଚା ସଡ଼ା ଶାସନ ବ୍ୟବସ୍ଥାର ପରିବର୍ତ୍ତନ ଚାହୁଁଥିଲେ। ଯେଉଁ ସମାଜରେ ଶ୍ରେଣୀ ନଥିବ, ଦୁର୍ନୀତି ନଥିବ, ସାମ୍ପ୍ରଦାୟିକତାର କୋଳାହଳ ନଥିବ; ଏପରି ଏକ ସମାଜ ପ୍ରତିଷ୍ଠା ପାଇଁ ସେ ଦୀର୍ଘ ୭୦ବର୍ଷ କମ୍ୟୁନିଷ୍ଟ ପାର୍ଟିର ଆଦର୍ଶରେ ବିଶ୍ୱାସ ରଖି ଜନସେବା, ଜନସଂଗଠନ ଓ ଗଣ ସଂଗ୍ରାମ କରିଯାଇଛନ୍ତି, ଦୁଇଥର ବିଧାୟକ ଥିଲେ କିନ୍ତୁ କେବେ ମଧ୍ୟ ଦୁର୍ନୀତି ସହ ସାଲିସ୍ କରିଥିବା ଶୁଣିନାହୁଁ। ଆଜି ସରପଂଚ ଠାରୁ ସାଂସଦ ଯାହାକୁ ଦେଖିବ,ଦୁର୍ନୀତିର ଅଭିଯୋଗ ଶୁଣିବ। କିନ୍ତୁ ବିଶ୍ୱନାଥବାବୁ ଭିନ୍ନ ଏକ ଧାତୁରେ ଗଢ଼ା। କେତେ ଘାତ ପ୍ରତିଘାତର ସମ୍ମୁଖୀନ ହୋଇଛନ୍ତି କିନ୍ତୁ ଆମଯୁଗର ରାଜନେତାଙ୍କ ପରି ସେ ପଥ ହୁଡ଼ିନାହାନ୍ତି। ସୁନା ନିଆଁରେ ପୋଡ଼ିହୋଇ ତେଜିଆନ ହେଲାପରି ଶେଷ ଦିନ ପର୍ଯ୍ୟନ୍ତ ସେ ଜନସେବାରେ ସକ୍ରିୟ ରହିଛନ୍ତି। ସେ ଜଣେ କମ୍ୟୁନିଷ୍ଟ , ସେ ଜଣେ ମାର୍କସବାଦୀ ଏବଂ ମାନବବାଦୀ। ସେ ଆମର ନମସ୍ୟ, ସେ ସବୁଦିନ ପାଇଁ ଆମ ସ୍ମୃତିରେ ରହିବେ।

*ପୂର୍ବତନ ବିଧାୟକ, ଛତ୍ରପୁର*



# କମ୍ରେଡ଼ ବିଶ୍ୱନାଥ ସାହୁଙ୍କ ସ୍ମୃତିରେ

ଜନାର୍ଦ୍ଦନ ପତି

ଜଣେ ଅମାୟିକ, ମିଷ୍ଟଭାଷୀ ଓ ହସହସ ମଣିଷଟି ଏ ମାଟିରୁ ହଜିଗଲେ ଗତ ବର୍ଷ ମାର୍ଚ୍ଚ ୧୮ ତାରିଖରେ। ଗଞ୍ଜାମ ଜିଲ୍ଲାର ଚାଷୀ ମୂଲିଆଙ୍କ ଆନ୍ଦୋଳନକୁ ଦୀର୍ଘ ଦଶନ୍ଧି ଦଶନ୍ଧି ଧରି ନେତୃତ୍ୱ ନେଇଥିଲେ କମ୍ରେଡ଼ ବିଶ୍ୱନାଥ ସାହୁ।

ଭାରତର କମ୍ୟୁନିଷ୍ଟ ଆନ୍ଦୋଳନର ପୁରୋଭାଗରେ ସେ ରହିଥିଲେ। ମୋର ମନେପଡୁଛି ଗୋଟିଏ ଘଟଣା – ଛତ୍ରପୁର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ସି.ପି.ଆଇର ପ୍ରାର୍ଥୀଭାବେ କମ୍ରେଡ଼ ବିଶ୍ୱନାଥ ସାହୁ ପ୍ରାର୍ଥୀ ହୋଇଥାନ୍ତି। ସିପିଆଇର ଆଉ ଜଣେ ନେତା ମଧ୍ୟ ସେହି ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀପତ୍ର ଦାଖଲ କଲେ। ଆମ ପାର୍ଟିର ସ୍ଥାନୀୟ କର୍ମୀମାନଙ୍କ ବିଚାର ଥିଲା ଅନ୍ୟରକମ। ସିପିଆଇ(ଏମ)ର ରାଜ୍ୟକମିଟି ସମ୍ପାଦକ ମୁଁ ଥାଏ। ଆମର ରାଜ୍ୟ କମିଟି ନିଷ୍ପତ୍ତି କଲା ଯେ କମ୍ରେଡ଼ ବିଶ୍ୱନାଥ ସାହୁଙ୍କୁ ଆମେ ସମର୍ଥନ ଜଣାଇବୁ। ଆମର ଆଂଚଳିକ ନେତାମାନେ ପାର୍ଟି ନିର୍ଦ୍ଧାରଣକୁ ଅମାନ୍ୟ କରିବାରୁ ସେମାନଙ୍କୁ ସାମୟିକ ଭାବେ ସସ୍‌ପେଣ୍ଡ କରାଯାଇଥିଲା।

କମ୍ରେଡ଼ ବିଶ୍ୱନାଥ ସାହୁଙ୍କୁ ମୁଁ ଯେପରି ଜାଣିଛି, ସେ ଗରିବ, ଖଟିଖିଆ, ଶୋଷିତ ମଣିଷପାଇଁ ଠିଆ ହେଉଥିଲେ। ଗଞ୍ଜାମ ଜିଲ୍ଲାର ସେତେବେଳେ କଂଗ୍ରେସର ଦୌରାତ୍ମ୍ୟ ପ୍ରବଳ। ଲକ୍ଷ୍ମଣ ମହାପାତ୍ରଙ୍କୁ ହତ୍ୟା କରିଥିଲେ। କମ୍ୟୁନିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ଆନ୍ଦୋଳନକୁ ଲକ୍ଷ୍ୟ କରିବା ଏକ ଗୁରୁତର ବିଷୟ। ଧନୀ, ଶୋଷକମାନଙ୍କ ଆକ୍ରମଣ ଓ ପ୍ରଲୋଭନକୁ ସାମ୍ନା କରିନପାରି କିଛି ନେତା ଆତ୍ମସମର୍ପଣ କରିଥିଲେ।




ସ୍ମୃତିରେ...କମ୍ରେଡ୍ ବିଶ୍ୱନାଥ ସାହୁ

କିନ୍ତୁ ବିଶ୍ୱନାଥ ସାହୁ ଥିଲେ ନିଆରାଧରଣର କମ୍ୟୁନିଷ୍ଟ । ସେ ଆତ୍ମସମର୍ପଣକୁ ଘୃଣା କରନ୍ତି । ଶତ୍ରୁର ଆକ୍ରମଣକୁ ସାମନା କରି ସେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ କମ୍ୟୁନିଷ୍ଟ ସଙ୍ଗଠନ ଗଢ଼ିଥିଲେ ।

କମ୍ରେଡ଼ ବିଶ୍ୱନାଥ ସାହୁଙ୍କ ଦେହାନ୍ତ ଘଟିଲା, ଯେତେବେଳେ ସାରା ବିଶ୍ୱରେ ଓ ଆମ ଦେଶରେ ପ୍ରତିକ୍ରିୟାଶୀଳ ଦକ୍ଷିଣପନ୍ଥୀ ଶକ୍ତିମାନେ ନିଜର କାୟା ବିସ୍ତାର କରିବାରେ ସକ୍ଷମ ହେଲେ । ପୁଞ୍ଜିବାଦର ସଙ୍କଟ ଗଭୀର ହେବା ସହିତ ଏହା ଭୟଙ୍କର ହିଂସ୍ର ଶକ୍ତିକୁ ସୃଷ୍ଟିକଲା । ଗାଁ ଠାରୁ ମେଟ୍ରୋପଲିଟାନ ସହର ପର୍ଯ୍ୟନ୍ତ ସବୁଠିଁ ଦେଖାଦେଲେ ସେହି ଅଶୁଭ ଶକ୍ତିମାନେ । ୟୁରୋପଠାରୁ ମାର୍କିନ ଆମେରିକା ସମେତ ଭାରତଠାରୁ ପାକିସ୍ଥାନ ପର୍ଯ୍ୟନ୍ତ ସବୁଠାରେ ହିଂସ୍ର ଦାନବୀୟ ଶକ୍ତି କ୍ଷମତା ଆହରଣ କରିଛନ୍ତି । ଏକ ସମ୍ପୂର୍ଣ୍ଣ ରେଖା ପରିସ୍ଥିତି ସୃଷ୍ଟି ହୋଇଛି ।

ଆମ ଦେଶର ସ୍ୱାଧୀନତା ସଂଗ୍ରାମର ସର୍ବଶ୍ରେଷ୍ଠ ସେନାପତି ମହାତ୍ମାଗାନ୍ଧୀଙ୍କୁ ହତ୍ୟା କରିଥିବା ଶକ୍ତିମାନେ ହିଁ ଆଜି ଭାରତର ଶାସନ କ୍ଷମତାରେ । ଗାନ୍ଧିଜୀଙ୍କ ଜନ୍ମ ରାଜ୍ୟ ଗୁଜୁରାଟ ଭ୍ରାତୃହତ୍ୟାର ପରୀକ୍ଷାଗାର ପାଲଟିଛି । ଦେଶର ଶ୍ରମଜୀବୀ ସମସ୍ତ ମଣିଷଙ୍କୁ କ୍ରୀତଦାସରେ ପରିଣତ କରିବା ପାଇଁ ରାଷ୍ଟ୍ର ପକ୍ଷରୁ ପ୍ରୟାସ ଚାଲିଛି । ଚାଷୀ ଅକାରଣରେ ପ୍ରାଣ ହରାଉଛି । ମହିଳାମାନଙ୍କ ଇଜ୍ଜତ୍ ଲୁଟ ହେଉଛି ପ୍ରତି ମୁହୂର୍ତ୍ତରେ । ଦେଶର ବିଶାଳ ସେନାବାହିନୀକୁ ସାମ୍ପ୍ରଦାୟିକତାବାଦର ଦୀକ୍ଷାରେ ଦୀକ୍ଷିତ କରାଯାଉଛି ।

ପରିସ୍ଥିତି ଏତେ ଗମ୍ଭୀର ଯେ ପରିଣତ ବୟସ୍କ ବୁଦ୍ଧିଜୀବୀ, ହେତୁବାଦୀ ମାନଙ୍କୁ ହତ୍ୟା କରିଚାଲିଛି ଘାତକ ବାହିନୀ । ଆମର ସାହିତ୍ୟ ସଂସ୍କୃତି, ସିନେମା, ଥିଏଟର, ଗବେଷଣା, ବିଜ୍ଞାନ ଚର୍ଚ୍ଚା ଫାସିବାଦୀମାନଙ୍କ ଆକ୍ରମଣର ଶିକାର ହେଉଛି ।

କମ୍ରେଡ଼ ବିଶ୍ୱନାଥ ସାହୁଙ୍କ ଭଳି ମଣିଷଙ୍କର ଆବଶ୍ୟକତା ଦେଖାଦେଇଛି ଆହୁରି ଅଧିକ ଭାବେ । ପରିସ୍ଥିତି ସାମନା କରିବାକୁ ହିଁ ହେବ ଓ ଏକ ନୂଆ ପରିବେଶ ସୃଷ୍ଟି କରିବାକୁ ହେବ । କମ୍ରେଡ଼ ବିଶ୍ୱନାଥ ସାହୁଙ୍କ ଅବର୍ତ୍ତମାନରେ ଏହି ଦାୟିତ୍ୱ ପଡ଼ିଛି ଆମ ସମସ୍ତଙ୍କ ଉପରେ । ଏହାହିଁ କମ୍ରେଡ଼ ବିଶ୍ୱନାଥ ସାହୁଙ୍କ ଆମ ସମସ୍ତଙ୍କ ପାଇଁ ଉପଦେଶ ।

✦

*ବରିଷ୍ଠ ସିପିଏମ୍ ନେତା ତଥା ଅଧିକାରର ସମ୍ପାଦକ*



# ଜନ ପ୍ରତିନିଧି ଓ ଉନ୍ନୟନ କାର୍ଯ୍ୟ

ବିଶ୍ୱନାଥ ସାହୁ

ଆମ ଦେଶର ଗଣତନ୍ତ୍ର ଓ ଗଣତାନ୍ତ୍ରିକ ପଦ୍ଧତି ଅନ୍ୟ ସବୁ ଦେଶ ଠାରୁ ଅଧିକ ଗଣତାନ୍ତ୍ରିକ ବୋଲି ଆମେ ଗର୍ବ କରିଥାଉ। ଆମ ସମ୍ବିଧାନ ଓ ନିର୍ବାଚନ ପଦ୍ଧତି ଅନୁଯାୟୀ ୫ ବର୍ଷକୁ ଥରେ ସାବାଳକ ଭୋଟରେ ଜଣେ ବ୍ୟକ୍ତି ନିର୍ବାଚିତ ହେଲେ ୫ ବର୍ଷ ଲାଗି କ୍ଷମତାବାନ ହୋଇପଡ଼ନ୍ତି, ଯଦିଓ ସେମାନଙ୍କର ପ୍ରତ୍ୟକ୍ଷ ଶାସନ କ୍ଷମତା (Administrative Power) କିଛି ନ ଥାଏ। ନିର୍ବାଚନ ଲଢୁଥିବା ପ୍ରାର୍ଥୀ ନିର୍ବାଚନ ପ୍ରକ୍ରିୟା ଚାଲିଥିବା ବେଳେ ସେ ବା ତାଙ୍କ ଦଳର କାର୍ଯ୍ୟକ୍ରମକୁ ଲୋକ ସମ୍ମୁଖରେ ଉପସ୍ଥାପିତ କରିଥାନ୍ତି। କିନ୍ତୁ ସେ ନିର୍ବାଚିତ ହେବା ପରେ ତାହା କାର୍ଯ୍ୟ କରିବାକୁ ବାଧ୍ୟ ବୋଲି କୁହାଯାଇ ନପାରେ, କିମ୍ବା ସେଥିପାଇଁ କୌଣସି ଆଇନ ମଧ୍ୟ ନାହିଁ। କିମ୍ବା ନିର୍ବାଚିତ ପ୍ରତିନିଧି ନିର୍ବାଚନ ଇସ୍ତାହାର କାର୍ଯ୍ୟକାରୀ ନ କଲେ ଜନସାଧାରଣ ବା ଭୋଟରମାନେ ତାଙ୍କ ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରିବା କ୍ଷମତା ନାହିଁ । ତେଣୁ ନିର୍ବାଚିତ ପ୍ରତିନିଧିମାନେ ବହୁ ସମୟରେ ସ୍ୱେଚ୍ଛାଚାରୀ ହୋଇପଡୁଥିବାର ଦେଖାଯାଏ। ଅନେକ ଭାବନ୍ତି- 'ନିର୍ବାଚନରେ ବହୁଅର୍ଥ ଶ୍ରାଦ୍ଧକରି ନିର୍ବାଚିତ ହେଲି, ତାର ଫାଇଦା ୫ବର୍ଷ ଧରି ଉଠାଇବାକୁ ପଡ଼ିବ'। ନିର୍ବାଚିତ ପ୍ରତିନିଧିମାନେ ନ ରହିଲେ କିମ୍ବା ଜନସମସ୍ୟା ପ୍ରତି ପରାଙ୍ମୁଖ ହେଲେ ସେମାନଙ୍କୁ କ୍ଷମତାରୁ ହଟାଇବା ବା ପ୍ରତିନିଧିତ୍ୱ ପ୍ରତ୍ୟାହାର କରିବା କ୍ଷମତା ଜନସାଧାରଣଙ୍କର ନାହିଁ।



ତତ୍କାଳୀନ ସୋଭିଏତ ୟୁନିୟନର ସମାଜବାଦୀ ନିର୍ବାଚିତ ପଦ୍ଧତିରେ ନିର୍ବାଚିତ ପ୍ରତିନିଧିମାନେ ମନମୁଖୀ ହୋଇ ପଡିଲେ କିମ୍ବା ଜନସାଧାରଣଙ୍କ ପ୍ରତି କାର୍ଯ୍ୟକାରୀ କରିବା ଲାଗି ପରାଙ୍ମୁଖ ହେଲେ ସେମାନଙ୍କୁ କ୍ଷମତାରୁ ହଟାଇବା ଓ ଜନ ପ୍ରତିନିଧିତ୍ୱରୁ ପ୍ରତ୍ୟାହାର କରିବା ସାମ୍ବିଧାନିକ କ୍ଷମତା ଜନସାଧାରଣଙ୍କ ପାଖରେ ଅନୁଗତ ରହୁଥିଲେ ଓ ପ୍ରତିଶ୍ରୁତି ପାଳନ କରିବାକୁ ବାଧ୍ୟ ହେଉଥିଲେ। କିନ୍ତୁ ଆମ ଦେଶରେ ଜଣେ ବ୍ୟକ୍ତି ଯେତେ ଲୋକ ବିରୋଧୀକାର୍ଯ୍ୟ କରୁଥାଉ ପଛେ, ଯଦି ଦଳୀୟ ସମର୍ଥନ ମିଳିଲା ତାହେଲେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ଏବଂ ସେଥିଲାଗି ଅପର୍ଯ୍ୟାପ୍ତ ଅର୍ଥ ବ୍ୟୟ, ମଦ କାରବାର ପ୍ରଭୃତିର ଆଶ୍ରୟ ନେଇ ନିର୍ବାଚନରେ ଜୟଯୁକ୍ତ ହେବାରେ କିଛି ଅସୁବିଧା ନଥାଏ। ସେଥିଲାଗି ବହୁ ରାଜନୈତିକ ଦଳ ଭିତରେ ଆସ୍ତେ ଆସ୍ତେ ଅପରାଧୀକରଣ ବଢ଼ିବାରେ ଲାଗିଛି। ନିର୍ବାଚନରେ ମୁଖ୍ୟ ରାସ୍ତା ଆଭିମୁଖ୍ୟ ରହିଛି-ଯେକୌଣସି ଉପାୟରେ

ଜୟଲାଭ କରି ଦଳୀୟ ସଂଖ୍ୟା ବୃଦ୍ଧି କରିବା । ତା' ନହେଲେ ଦଳ ନ୍ୟୁନ ହୋଇପଡ଼ିବ। ପାର୍ଟିରେ ଆଦର୍ଶ, କାର୍ଯ୍ୟକ୍ରମ, ନୀତି, ବ୍ୟକ୍ତିଗତ ଚରିତ୍ର ଓ ପରାକାଷ୍ଠା ପ୍ରତି ଆଦୌ ବିଚାର କରାଯାଏ ନାହିଁ।

ଏ ପରିକି ଗ୍ରାମପଂାୟତ, ପଂାୟତ ସମିତି, ଜିଲ୍ଲା ପରିଷଦଠାରୁ ଆରମ୍ଭ କରି ବିଧାନସଭା କିମ୍ବା ଲୋକସଭା ନିର୍ବାଚନ ପାଇଁ ମୁଖ୍ୟତଃ ଅର୍ଥବଳ, ବାହୁବଳ ଓ ମଦବଳର ବ୍ୟବହାର ଅତ୍ୟନ୍ତ ବେଶୀ। ତା' ନହେଲେ ଆଇନରେ ଯେଉଁ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ବ୍ୟୟ ବ୍ୟବସ୍ଥା ଓ ଆଚରଣପଦ୍ଧତି ସ୍ଥିର କରାଯାଇଛି ତାହା ଧର୍ମକୁ ଆଖି ଠାର କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ। ଏପରିକି ସମବାୟ ଅନୁଷ୍ଠାନଗୁଡ଼ିକର ନିର୍ବାଚନ କ୍ଷେତ୍ରରେ ମଧ୍ୟ ଏହି ରୋଗ ବ୍ୟାପିଗଲାଣି। ଏଥିରେ ଦୁର୍ନୀତିମୁକ୍ତ ଗଣତାନ୍ତ୍ରିକ ମତଦାନ ଚିନ୍ତା କରିବା ବିଡମ୍ବନା ମାତ୍ର। ଏଠାରେ ଉଲ୍ଲେଖ କଲେ ଅପ୍ରାସଙ୍ଗିକ ହେବ ନାହିଁ ଯେ- ବର୍ତ୍ତମାନ ସାଂସଦ, ବିଧାୟକ ଓ ପଂାୟତ ସଂସ୍ଥା ଗୁଡ଼ିକର ନିର୍ବାଚିତ ପ୍ରତିନିଧିମାନେ ନିଜର ମତ ଅନୁଯାୟୀ ବିପୁଳ ସରକାରୀ ପାଣ୍ଠିକୁ ବ୍ୟବହାର କରିବା ସେମାନଙ୍କର ବ୍ୟବସ୍ଥାରେ ନିର୍ଦ୍ଧାରିତ କରାଯାଇଛି। ଏକଦା ବିଚାର କରାଯାଉଥିଲା ଯେ, ନିର୍ବାଚିତ ପ୍ରତିନିଧିମାନେ ଗ୍ରାମ ଓ ସହରାଂଳ ସହ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା ଏବଂ ଜନସାଧାରଣଙ୍କ ଅଭାବ ଅସୁବିଧା ବୁଝୁଥିବା ଯୋଗୁଁ ସରକାରୀ ଅନୁଦାନ ଉଚିତ ବିନିଯୋଗ ହୋଇପାରିବ, ଯଦ୍ଦ୍ୱାରା କି ଉନ୍ନୟନ କାର୍ଯ୍ୟ ଯଥାର୍ଥ ଭାବେ ସମ୍ପାଦନ ହେବ। ଅମଲାତନ୍ତ୍ର କ୍ଷୁଣ୍ଣ ହେବ। ମନ୍ତ୍ରୀ, ଯନ୍ତ୍ରୀ ଓ ଉଚ୍ଚପଦବୀଙ୍କ ପାଖକୁ ଲୋକମାନେ ଗୁହାରି ଜଣାଇବାକୁ ବାରମ୍ବାର ଦୌଡ଼ିବାକୁ ପଡ଼ିବ ନାହିଁ। ନିର୍ବାଚିତ ପ୍ରତିନିଧି ଓ ଜନସାଧାରଣଙ୍କ ମଧ୍ୟରେ ନିବିଡ଼ ସମ୍ପର୍କ ପ୍ରତିଷ୍ଠା ହେବ ଇତ୍ୟାଦି।

କିନ୍ତୁ ଅନୁଭୂତିରୁ ଦେଖାଯାଉଛି ଯେ – ଏହି ଉନ୍ନୟନ ପାଣ୍ଠି ଯେଉଁ ଭାବପ୍ରବଣତା ନେଇ ନିର୍ବାଚିତ ପ୍ରତିନିଧିମାନଙ୍କ ହାତରେ ଅର୍ପଣ କରାଯାଉଛି ତାହା ସେହି ଉଦ୍ଦେଶ୍ୟରେ ବିନିଯୋଗ କରାଯାଉନାହିଁ। ଜନସାଧାରଣଙ୍କ ସ୍ୱାର୍ଥ ରକ୍ଷା ଓ ଆବଶ୍ୟକତା ଦୃଷ୍ଟିରୁ ଏହି ପାଣ୍ଠି ବିନିଯୋଗ ହେଉନାହିଁ। ବହୁ କ୍ଷେତ୍ରରେ ଦଳୀୟ ମନୋବୃତ୍ତି, ଭବିଷ୍ୟତରେ ଭୋଟ ପାଇବା ଆଭିମୁଖ୍ୟ ରଖି ଦଳୀୟ ଚାଟୁକାରଙ୍କ ସ୍ୱାର୍ଥରେ କାର୍ଯ୍ୟ ହେଉଅଛି। ଗ୍ରାମବାସୀ ଓ ଗ୍ରାମ କମିଟୀର ମତକୁ ଭ୍ରୁକ୍ଷେପ ନ କରି ମୁଷ୍ଟିମେୟ ଦଳୀୟ ବ୍ୟକ୍ତିଙ୍କ ମତକୁ ପ୍ରାଧାନ୍ୟ ଦିଆଯାଇଛି। ଗ୍ରାମର ସମୂହ ସ୍ୱାର୍ଥ ଓ ଆବଶ୍ୟକତାକୁ ବିଚାର ନକରି ଦଳୀୟ ଓ ଜାତିଆଣ କୋଠଘର, ମଣ୍ଡପ ନିର୍ମାଣରେ ଅର୍ଥ ବ୍ୟୟ କରାଯାଉଛି। ଏପରିକି ଗୋଟିଏ ଗୋଟିଏ ଗ୍ରାମରେ ବିଭିନ୍ନ ଜାତି, ସମ୍ପ୍ରଦାୟ ପାଇଁ ଏକାଧିକ କୋଠଘର ନିର୍ମାଣ ପାଇଁ ଅନୁଦାନ ଦିଆଯାଉଛି। ଯାହା ଫଳରେ ଗାଁ ଗାଁରେ ବାସ କରୁଥିବା ବହୁ ଜାତି ଓ ଯୌଥ ପରିବାର ମଧ୍ୟରେ ଅହେତୁକ ବାଦ- ବିସମ୍ବାଦ, କଳହ ଓ ମତଭେଦ ସୃଷ୍ଟି ହୋଇ ଗ୍ରାମର ଏକତା ନଷ୍ଟ ହେଉଥିବା ଦେଖାଯାଉଛି। ବିଭିନ୍ନ ସ୍ଥାନରେ ସମ୍ପୃକ୍ତ ଉନ୍ନୟନ କାମଗୁଡ଼ିକ ସମ୍ପାଦନ କରିବା ପାଇଁ ସରକାରୀ କର୍ମଚାରୀମାନେ ଗ୍ରାମ୍ୟ କମିଟି ଓ ସଂସ୍ଥାର ମତ ବିରୁଦ୍ଧରେ ପ୍ରତିନିଧିମାନଙ୍କ ଅଙ୍ଗୁଳି ନିର୍ଦ୍ଦେଶିତ ବ୍ୟକ୍ତିଙ୍କୁ କାର୍ଯ୍ୟାଦେଶ ଦେଉଛନ୍ତି, ଯାହା ଫଳରେ ଗାଁ ଗାଁରେ ମାରପିଟ, ହତ୍ୟା, ଗଣ୍ଡଗୋଳ, ପ୍ରଭୃତି ଘଟଣାମାନ ଘଟୁଛି ଏବଂ ଗୁଣ୍ଡାରାଜର ବୀଜବୀପନ କରାଯାଉଛି। ଅନେକ କ୍ଷେତ୍ରରେ ମଞ୍ଜୁରୀ ହୋଇଥିବା ଅର୍ଥ ବିନିଯୋଗ ହେବା ପୂର୍ବରୁ ତଳୁ ଉପର ସ୍ତର ଯାଏ ଭାଗ ନିର୍ଣ୍ଣୟ କରିବାରେ କେହି ପଛଘୁଂା ଦେଉନଥିବା ଶୁଣାଯାଏ।

ଏସମସ୍ତ କାରଣରୁ ବାସ୍ତବରେ ଉନ୍ନୟନ କାର୍ଯ୍ୟ ଯଥାର୍ଥ ଭାବେ ସମ୍ପାଦିତ ହେଉନାହିଁ। ବରଂ ରାଜନୀତିକ୍ଷେତ୍ରରେ ଜାତିଆଣ ଭାବ, ସାମ୍ପ୍ରଦାୟିକତା, ଅପରାଧୀକରଣ, ଅସାମାଜିକତା ପ୍ରଭୃତି ସମାଜକୁ କଳୁଷିତ କରିଦେଲାଣି, ଏପରିକି ସରକାରୀ ଅନୁଦାନରେ ନିର୍ମିତ ଗାଁ ଗଣ୍ଡାର

କୋଠଘର ବ୍ୟବହାର ଓ କାହା ନିୟନ୍ତ୍ରଣରେ ରହିବ ସେଥିଲାଗି ମଧ୍ୟ ଗଣ୍ଡଗୋଳ ଓ ହାଣକାଟ ହେଉଥିବା ଦେଖାଦେଉଛି । ମଞ୍ଜୁରି ପ୍ରତିନିଧି ପାଣ୍ଠି ବିନିଯୋଗ କରିବା ପାଇଁ ସମ୍ପୃକ୍ତ କର୍ମଚାରୀମାନେ ଗୃହନିର୍ମାଣ ଲାଗି ଗ୍ରାମ୍ୟରାସ୍ତା ଅବରୋଧ, ଯାତାୟତ ଅସୁବିଧା ଓ ଭବିଷ୍ୟତରେ ଗ୍ରାମ ସମ୍ପ୍ରସାରଣ ପ୍ରତି ଦୃଷ୍ଟି ନଦେଇ କାର୍ଯ୍ୟ କରୁଥିବା ଯୋଗୁଁ ବ୍ୟାପକ ଅସନ୍ତୋଷ ଦେଖାଯାଉଛି । ଏ ସମସ୍ତ କାରଣରୁ ଗ୍ରାମର ଉନ୍ନୟନ କାର୍ଯ୍ୟ ମଙ୍ଗଳ ପରିବର୍ତ୍ତେ ଜନ ଅସନ୍ତୋଷ ପ୍ରକାଶପାଉଛି । ପଲ୍ଲୀପ୍ରାଣ ଏ ଦେଶର ଏକତା, ଭ୍ରାତୃଭାବ, ସଦ୍‌ଭାବନା, ଗ୍ରାମ୍ୟ ସଂସ୍କୃତି ଆଦି ନଷ୍ଟ ହୋଇ ଗାଁମାନଙ୍କରେ ଦୁର୍ନୀତିର ସୌଧ, କ୍ଷୁଦ୍ର ଦଳୀୟ ସଂକୀର୍ଣ୍ଣତା ଓ ସଂକୀର୍ଣ୍ଣ ରାଜନୈତିକ ଆଖଡ଼ା ସୃଷ୍ଟି ହେବାରେ ଲାଗିଛି, ପଂଚାୟତିରାଜ ଓ ପଂଚପରମେଶ୍ୱର ଭାବନା ଲୋପ ହୋଇଯାଉଛି । ଏସମସ୍ତ କାରଣରୁ ସାଧାରଣ ଗରିବ ଚାଷୀ, କ୍ଷେତମୂଲିଆ, କାରିଗର ଯୁବକ, ମହିଳା ପ୍ରଭୃତି ଶ୍ରେଣୀ ନିଜର ପ୍ରକୃତ ଶ୍ରେଣୀସ୍ୱାର୍ଥକୁ ଭୁଲି ବିପଥଗାମୀ ହେଉଛନ୍ତି । ଏହାର ସୁଯୋଗ ନେଉଛନ୍ତି ଗାଁ ଗହଳିର ଟାଉଟର, ମାମଲତକାର ଓ ସ୍ୱାର୍ଥାନ୍ଧ ରାଜନୈତିକ ନେତା ଓ ସାମ୍ପ୍ରଦାୟିକ ପ୍ରତିକ୍ରିୟାଶୀଳ ଶକ୍ତିମାନେ । ଏ ସବୁର ନିୟନ୍ତ୍ରଣ କରିବା ପ୍ରତ୍ୟେକ ଦେଶପ୍ରେମୀ ରାଜନୈତିକ ଦଳର ପ୍ରଧାନ କର୍ତ୍ତବ୍ୟ ହୋଇପଡ଼ିଲାଣି । ତା' ନ ହେଲେ ଗ୍ରାମ୍ୟଜୀବନ ଓ ସଂସ୍କୃତି ଅଧିକ କଳୁଷିତ ହୋଇପଡ଼ିବ । ଦୁର୍ନୀତି, ଗୁଣ୍ଡାଗିରି, ଅପରାଧୀକରଣ, ଯଥେଚ୍ଛାଚାରିତା ଅଧିକ ବୃଦ୍ଧି ପାଇବ ।

ଏଣୁ ନିର୍ବାଚିତ ପ୍ରତିନିଧିମାନଙ୍କ ଦ୍ୱାରା ବ୍ୟୟ କରାଯାଉଥିବା ପାଣ୍ଠିର ସଦ୍‌ବିନିଯୋଗ ବ୍ୟବସ୍ଥା ସର୍ବାଦୌ ଆବଶ୍ୟକ । ଯେକୌଣସି ନିର୍ବାଚନ ପରେ ନିର୍ବାଚିତ ପ୍ରତିନିଧିମାନେ ସମସ୍ତ ଜନସାଧାରଣଙ୍କ ପ୍ରତିନିଧି ବିବେଚନା କରି ଜନସାଧାରଣଙ୍କ ଆବଶ୍ୟକତା ଦୃଷ୍ଟିରୁ ସମସ୍ତ ଉନ୍ନୟନ କାର୍ଯ୍ୟ ଗ୍ରାମ୍ୟ କମିଟି ଜରିଆରେ ସମ୍ପାଦନ କରିବା ବାଞ୍ଛନୀୟ । ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ପଂଚାୟତ ସମିତି ଓ ବିଭିନ୍ନ ଏଜେନ୍ସି ଜରିଆରେ ସମ୍ପାଦନ କରାଯାଉଥିବା ଉନ୍ନୟନ କାର୍ଯ୍ୟଗୁଡ଼ିକ ଏବଂ ଅର୍ଥବ୍ୟବସ୍ଥା ଲାଗି ଗ୍ରାମ୍ୟ କମିଟିକୁ ହିଁ ଆୟୁଧ କରିବାକୁ ହେବ । ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ସମସ୍ତ ଉନ୍ନୟନ କାର୍ଯ୍ୟ ଯେପରି ସମ୍ପାଦିତ ହେବ ସେଥିଲାଗି ବ୍ଲକ ପ୍ରଶାସନ ଗ୍ରାମ୍ୟକମିଟି ପାଖରେ ଦାୟୀ ରହିବେ । ପଂଚାୟତ ଓ ନିର୍ବାଚିତ ପ୍ରତିନିଧିମାନେ ବିଭିନ୍ନ କାର୍ଯ୍ୟର ତଦାରଖ ଓ ତନଖି ଦାୟିତ୍ୱ ବହନ କରିବେ । ସରକାରୀ ଅନୁଦାନରେ ଗଢ଼ି ଉଠୁଥିବା କୋଠଘର ଗୁଡ଼ିକର ରକ୍ଷଣାବେକ୍ଷଣ ସୁପରିଚାଳନା ପାଇଁ ଗ୍ରାମପଂଚାୟତ୍ ନିକଟରେ ସମସ୍ତ ଅଧିକାର ନ୍ୟସ୍ତ କରାଯିବା ଉଚିତ । ଏହା ସଙ୍ଗେ ସଙ୍ଗେ ଗ୍ରାମମାନଙ୍କରେ ଜାତିଆଣ ବିଭେଦ ଓ ସାମ୍ପ୍ରଦାୟିକତାବାଦ ଭାବଧାରାକୁ ଦମନ ଓ ନିରୁତ୍ସାହିତ କରିବା ଆବଶ୍ୟକ । ଜାତି, ଧର୍ମ, ସମ୍ପ୍ରଦାୟ ନିର୍ବିଶେଷରେ ଜନସାଧାରଣଙ୍କ ମଧ୍ୟରେ ଶିକ୍ଷାର ପ୍ରସାର, ଗ୍ରାମ୍ୟ ରାସ୍ତା ନିର୍ମାଣ, ଜଳସେଚନ, ପାନୀୟ ଜଳର ସୁବ୍ୟବସ୍ଥା, ବିଦ୍ୟାଳୟ ଓ କମ୍ୟୁନିଟି କେନ୍ଦ୍ର ସ୍ଥାପନ, ମହିଳାସମିତି ଗଠନ, ବୃକ୍ଷରୋପଣ, ପରିବେଶର ସୁରକ୍ଷା, ଗ୍ରାମ୍ୟ ଜଙ୍ଗଲ ସୃଷ୍ଟି କରିବା ଆଦି ଜନହିତକର କାର୍ଯ୍ୟରେ ହିଁ ସରକାରୀ ଅନୁଦାନ ବ୍ୟୟ କରିବା ବ୍ୟବସ୍ଥା ରହିବା ବିଧେୟ ।

ଆଜି ସମାଜର ପ୍ରତ୍ୟେକ ସ୍ତରରେ ଦୁର୍ନୀତିରୁ ଚେର ବ୍ୟାପକ ଆକାର ଧାରଣ କରିଛି । ତାହା ତଳସ୍ତରରୁ ଉପର ପାହ୍ୟା ଯାଏ ଯଦି ନିର୍ମୁଳ କରିବା ଲାଗି ପ୍ରୟାସ କରାନଯାଏ ତାହା ସମଗ୍ର ସମାଜକୁ କଳୁଷିତ କରିବ । ଏଣୁ ଜନପ୍ରତିନିଧିମାନେ ପ୍ରଥମେ ଭୋଗ ମନୋବୃତ୍ତି ପରିହାର କରି ତ୍ୟାଗ ଓ ସେବା ମନୋଭାବ ପୋଷଣ କରିବା ବାଞ୍ଛନୀୟ ।

*(ସୌଜନ୍ୟ- 'ସମଦୃଷ୍ଟି'-୨୦୦୭)*

✦

ସ୍ମୃତିରେ --କମ୍ରେଡ୍ ବିଶ୍ୱନାଥ ସାହୁ

# ଉତ୍କଳନାୟକ ବିଶ୍ୱନାଥ ସାହୁଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି

ବିମଳା ମହାନ୍ତି

ସାଥୀ ବିଶ୍ୱନାଥ ସାହୁ ଗଞ୍ଜାମ ଜିଲ୍ଲାର ଐତିହ୍ୟସମ୍ପନ୍ନ ଗ୍ରାମ ବଡ଼କୁଶସ୍ଥଳୀ ଗ୍ରାମରେ ତା ୧୨.୦୭.୧୯୨୫ ମସିହାରେ ପିତା ଗୋପୀନାଥ ସାହୁ ଏବଂ ମାତା ଇନ୍ଦୁମତୀ ସାହୁଙ୍କ କୂଳ ଓ କୋଳ ମଣ୍ଡନ କରି ଜନ୍ମଲାଭ କରିଥିଲେ। କମେଡ଼ ବିଶ୍ୱନାଥ ସାହୁ ଦିନେ ବିପ୍ଳବୀ ନେତା ତଥା ଋଷୀ ରୟତ ଆନ୍ଦୋଳନର ପୁରୋଧା ହେବେ, ଏହା କେହି କେବେ ଆଶା କରିନଥିଲେ। ପ୍ରାଥମିକ ଶିକ୍ଷା ବଡ଼କୁଶସ୍ଥଳୀରେ ଲାଭ କରିବା ପରେ ପୁରୁଷୋତମପୁର ନରସିଂହ ଦାଶ ହାଇସ୍କୁଲରେ ପାଠ ପଢ଼ିବାପରେ ବ୍ରହ୍ମପୁର ଖଲିକୋଟ କଲେଜରେ ପାଠ ପଢ଼ିବାବେଳେ ହିଁ ସେ ଛାତ୍ର ସଙ୍ଗଠନରେ ଯୋଗଦେଇ କମ୍ୟୁନିଷ୍ଟ ଆଦର୍ଶରେ ଦୀକ୍ଷିତ ହେଲେ। ଋଷୀ ରୟତ ଆନ୍ଦୋଳନ ସହ ଜଡ଼ିତହେବା ସହ କମ୍ୟୁନିଷ୍ଟ ସଙ୍ଗଠନ ଜିଲ୍ଲା ତଥା ରାଜ୍ୟରେ ଦୃଢ଼ୀକରଣ କରିବାରେ ଲାଗିପଡ଼ିଲେ, ଏଥିପାଇଁ ସେ ବହୁବାର କାରାବରଣ କରିଛନ୍ତି। ପ୍ରଥମେ ସେ ୧୯୮୦ ମସିହାରେ ଛତ୍ରପୁର ବିଧାନସଭା ଆସନରୁ ବିଧାୟକ ରୂପେ ନିର୍ବାଚିତ ହେଲେ। ସେ ଦୁଇଥର ବିଧାୟକ ହୋଇଥିଲେ ମଧ୍ୟ ଆଜିକାଲିକା ପରି ନିଜ ପରିବାର ଓ ନିଜକୁ ପ୍ରାଧାନ୍ୟ ନଦେଇ କ୍ଷମତା ଓ ସମ୍ପତ୍ତିର ଲୋଭ ନରଖି ଜନସାଧାରଣଙ୍କ ପାଇଁ ସାରାଜୀବନ ଉତ୍ସର୍ଗ କରିଥିଲେ। ସେ ରୋଗଶଯ୍ୟାରେ ପଡ଼ିବା ପର୍ଯ୍ୟନ୍ତ ବିଭିନ୍ନ ଅଂଚଳକୁ ଯାଇ ଜନସାଧାରଣଙ୍କ ସମସ୍ୟା ଏବଂ ଆନ୍ଦୋଳନରେ ଭାଗ ନେଉଥିଲେ। ସେ ବିଧାନସଭାର ସଭ୍ୟ ଥିବା ସମୟର କଥା, ସେତେବେଳେ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀଯୁକ୍ତ ନୀଳମଣି ରାଉତରାୟ ଏବଂ ଭାରତର ରାଷ୍ଟ୍ରପତି ଥିଲେ ଡକ୍ଟର ଭି.ଭି.ଗିରି। ସେହି ସମୟରେ ନକ୍ସଲନେତା ନାଗଭୂଷଣ ପଟ୍ଟନାୟକଙ୍କୁ ସର୍ବୋଚ୍ଚ ନ୍ୟାୟାଳୟ ଫାଶି ଦେବାକୁ ଆଦେଶ ଦେଇଥିଲେ କିନ୍ତୁ ତାଙ୍କୁ ଫାଶି ଦଣ୍ଡରୁ ମୁକୁଳେଇବା ପାଇଁ ବାମପନ୍ଥୀ ନେତାମାନେ ଉଦ୍ୟମ କରିଥିଲେ। ଏଥିରେ ସାଥୀ ବିଶ୍ୱନାଥ ସାହୁଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା। ସି.ପି.ଆଇ.ର କେନ୍ଦ୍ରୀୟ ସମ୍ପାଦକ ଭୂପେଶ ଗୁପ୍ତ ସାଥୀ ବିଶ୍ୱନାଥ ସାହୁଙ୍କୁ କହିଲେ ତୁମେ ଓଡ଼ିଶା ବିଧାନସଭାରେ ନାଗଭୂଷଣଙ୍କୁ ମୁକ୍ତି ଦେବାପାଇଁ ଏକ ପ୍ରସ୍ତାବ ଗୃହୀତ କରାଅ, ତାହାହେଲେ ସେ ମୃତ୍ୟୁଦଣ୍ଡରୁ ମୁକ୍ତି ପାଇପାରିବେ। ଏହାପରେ ବିଶ୍ୱନାଥ ବାବୁ ମୁଖ୍ୟମନ୍ତ୍ରୀଙ୍କ ସହ ଏ ସମ୍ପର୍କରେ ଆଲୋଚନା କଲେ । କିନ୍ତୁ ମୁଖ୍ୟମନ୍ତ୍ରୀ କହିଲେ ବିଧାନସଭାରେ ପ୍ରସ୍ତାବ ଗ୍ରହଣ କରିବା ସମ୍ଭବପର ନୁହେଁ ଏହା ବଦଳରେ ଶ୍ରୀଯୁକ୍ତ ନୀଳମଣି ରାଉତରାୟ ଗୋଟିଏ ସୁନ୍ଦର ପ୍ରସ୍ତାବ ଦେଲେ। ନାଗଭୂଷଣ ପଟ୍ଟନାୟକଙ୍କୁ ଫାଶିଦଣ୍ଡରୁ ମୁକ୍ତି କରିବାପାଇଁ ରାଷ୍ଟ୍ରପତିଙ୍କ ଉଦ୍ଦେଶ୍ୟରେ ଏକ ଆବେଦନ ପତ୍ର ଲେଖାଯାଉ, ସେଥିରେ ଓଡ଼ିଶାର ବିଧାୟକ, ମନ୍ତ୍ରୀମାନଙ୍କ ଦସ୍ତଖତ କରିବା ଉଦ୍ୟମ କର। ମୁଁ ସମସ୍ତଙ୍କୁ ଏ ସମ୍ପର୍କରେ କହିଦେବି। ତାହାହିଁ ହେଲା। ଦରଖାସ୍ତ ଲେଖା ହେଲା, ଶତାଧିକ ବିଧାୟକ ଏହି ଦରଖାସ୍ତରେ ଦସ୍ତଖତ କଲେ। ଏହାପରେ ଏହି ଦରଖାସ୍ତ ରାଷ୍ଟ୍ରପତିଙ୍କଠାରେ ଦାଖଲ ହେଲା ଏବଂ ନାଗଭୂଷଣ ପଟ୍ଟନାୟକଙ୍କୁ ରାଷ୍ଟ୍ରପତି କ୍ଷମାଦେଶ ଦେଲେ। ମୃତ୍ୟୁଦଣ୍ଡରୁ ମୁକ୍ତି ପାଇବା କ୍ଷେତ୍ରରେ ବିଶ୍ୱନାଥ ସାହୁଙ୍କର ପ୍ରଚ୍ଛନ୍ନ ହାତ ଥିଲା। ଏହା ହୁଏତ ଅନେକ ଜାଣିଥିବେ କି ନାହିଁ ତାହା ସନ୍ଦେହ।

ସେ କେବଳ ରାଜନୈତିକ ସ୍ତରରେ ନିଜକୁ ହଜାଇ ଦେଇନଥିଲେ ସେ ଜନସାଧାରଣ ମଧ୍ୟରେ ସମ୍ପୂର୍ଣ୍ଣ ରୂପେ ସଂଶ୍ଳିଷ୍ଟ ରହିଥିଲେ ଲୋକଙ୍କ ସୁଖ ଦୁଃଖରେ ଭାଗୀ ହେଉଥିଲେ ଏବଂ ଜନସାଧାରଣଙ୍କ ପାରିବାରିକ ଜୀବନରେ ମଧ୍ୟ ସୁଖ ଶାନ୍ତି ପାଇଁ ଉଦ୍ୟମ କରି ଆବଶ୍ୟକବେଳେ ବିଭିନ୍ନ

ପରିବାରରେ ଲାଗି ରହିଥିବା ଅଶାନ୍ତି ଅସନ୍ତୋଷ ଓ କନ୍ଦଳକୁ ସମାଧାନ କରୁଥିଲେ। ବିଭିନ୍ନ ବ୍ୟକ୍ତିଙ୍କର ଘରେ କିଏ ନିମନ୍ତ୍ରଣ କରୁବା ନକରୁ ସାଥୀ ବିଶ୍ୱନାଥ ବାବୁ ଉପସ୍ଥିତ ହୋଇ ସାମାଜିକ କାର୍ଯ୍ୟରେ ଆଗୁସାର ହୋଇ ସବୁକାର୍ଯ୍ୟ କରିବାରେ ସହାୟତା କରୁଥିଲେ ଏହା କେହି ଅସ୍ୱୀକାର କରିପାରିବେ ନାହିଁ।

ଆମ ଜୀବନରେ ଆମ ପରିବାର ପ୍ରତି ବିଶ୍ୱନାଥ ବାବୁଙ୍କ ଅବଦାନ କେତେ ଗୁରୁତ୍ୱପୂର୍ଣ୍ଣ ରହିଥିଲା, ତାହା ବର୍ଣ୍ଣନା କରିବା ସମ୍ଭବପର ନହେଲେ ମଧ୍ୟ ଗୋଟିଏ କଥା ଉଲ୍ଲେଖ କରିବାକୁ ବାଧ୍ୟ ହେଉଛି। ଆମର ବଡ଼ଝିଅ ସ୍ନିଗ୍ଧା ପଟ୍ଟନାୟକର ଲିଭର ଷ୍ଟୋନ ହେଲା। ଓଡ଼ିଶାରେ ତାକୁ ଅପରେସନ କରି ଆରୋଗ୍ୟ କରିବା ସମ୍ଭବ ନୁହେଁ ବୋଲି ବଡ଼ ବଡ଼ ଡାକ୍ତର ସର୍ଜନ ମାନେ ମତଦେଲେ। ଏଥିପାଇଁ ହାଇଦ୍ରାବାଦ ଗ୍ଲୋବାଲ ହସପିଟାଲକୁ ଯାଇ ଅପରେସନ କଲେ ହିଁ ଝିଅ ବଂଚିପାରବ ବୋଲି ପରାମର୍ଶ ଦେଲେ। ଗ୍ଲୋବାଲ ହସପିଟାଲ ହାଇଦ୍ରାବାଦକୁ ପ୍ରଫେସର କେ.ଟି. ସୁବୁଦ୍ଧି ଆମହାତରେ ଚିଠିଟିଏ ଦେଲେ। ଆମେ ୦୮.୦୭.୨୦୦୦ରେ ହାଇଦ୍ରାବାଦ ଅଭିମୁଖେ ବାହାରିଲୁ ଝିଅକୁ ନେଇ। ମୁଁ, ଝିଅ, ମୋର ସ୍ୱାମୀ ଡାକ୍ତର ହୃଷୀକେଶ ମହାନ୍ତି (ଆମ ସହ ସାଥୀ ବିଶ୍ୱନାଥ ସାହୁ ମଧ୍ୟ) ହାଇଦ୍ରାବାଦ ଗଲୁ ତାପରଦିନ ହାଇଦ୍ରାବାଦରେ ଅପରାହ୍ନରେ ପହଂଚି ଆନ୍ଧ୍ର ରାଜ୍ୟ ସି.ପି.ଆଇ ଅଫିସ ମକଦୁମଭବନରେ ପହଂଚିବାପରେ ସେଠାରେ ସାଂସଦ ସୁଧାକର ରେଡ଼ିଙ୍କ ସମେତ କେତେକ ବିଧାୟକ ପାର୍ଟିର ବହୁ ନେତୃବୃନ୍ଦ ଆମକୁ ସ୍ୱାଗତ କରି ରହିବା ବ୍ୟବସ୍ଥା କରିବା ସହ ଗ୍ଲୋବାଲ ହସପିଟାଲର ମୁଖ୍ୟ ଡ଼ାକ୍ତର କେ. ରବିନ୍ଦ୍ର ନାଥଙ୍କ ସହ ସାକ୍ଷାତ କରାଇଲେ ଏବଂ ୧୦ ତାରିଖରେ ସଫଳ ଅପେରସନ ହେଲା। ଲକ୍ଷାଧିକ ଟଙ୍କା ଏଥିରେ ଖର୍ଚ୍ଚ ହେବା ଆକଳନ ହୋଇଥିବାବେଳେ ସାଥୀ ବିଶ୍ୱନାଥ ବାବୁଙ୍କ ଉପସ୍ଥିତ ଓ ସହଯୋଗ ଫଳରେ ଝିଅକୁ ସୁସ୍ଥ କରି ଆମେ ଘରକୁ ଫେରିବା ଯାଏ ମାତ୍ର ୩୦ହଜାରରୁ କମ ଟଙ୍କା ଖର୍ଚ୍ଚ କରିବା ସମ୍ଭବ ହୋଇଥିଲା। ଅପରେସନ ଦିନକ ପରେ ସଂଜ୍ଞା ଫେରିବା ବେଳେ ଆମେ ତାର ବେଡ଼ ପାଖରେ ଠିଆ ହୋଇଥିଲୁ ପ୍ରଥମେ ସ୍ନିଗ୍ଧା ବିଶ୍ୱନାଥ ବାବୁଙ୍କୁ ଦେଖି କୃତଜ୍ଞତା ଭରା ହସଟିଏ ହସିଦେବା ଦେଖି ବିଶ୍ୱନାଥ ବାବୁ ଖୁସି ହେଇଯାଇଥିଲେ ଓ କହିଥିଲେ ଝିଅ, ତୋର ଆମେ ପୁଣି ହସ ଦେଖିବୁ ଏହା ଆମ ଆଶା ବାହାରେ ଥିଲା। ତୋର ଏଇ ହସଦେଖି ଭଗବାନ କଣ ବଧେଇ ଜଣାଇବୁ ଚିନ୍ତା କରିପାରୁନୁ। ଏ ମଧ୍ୟରେ ଦୀର୍ଘ ୧୫, ୧୬ବର୍ଷ ଅତିକ୍ରମ ହୋଇଗଲେ ମଧ୍ୟ ଏଇ କଥା ପଦକ ଆମ ଝିଅ କିମ୍ବା ଆମେ ଭୁଲିପାରି ନାହୁଁ। ଏହା ତାଙ୍କର ମହନୀୟତା ଦରଦୀ ଗୁଣ, ଓ ମଧୁରବୋଳା ସ୍ନେହ ସମ୍ପର୍କରେ ନିଚ୍ଛକ ନିଦର୍ଶନ, ବିଶ୍ୱନାଥ ସାହୁଙ୍କର ଏ ଧରଣର ବହୁଗୁଣ ଓ ମହନୀୟତା ରହିଛି। ତାହା ଲେଖି ବସିଲେ ପୋଥିଏ ହବ। ବିଡ଼ମ୍ବନାର ବିଷୟ ଏହି ଯେ ପରିଣତ ବୟସରେ ଯଦିଓ ଇହଲୀଳା ସାରି ୯୧ବର୍ଷ ବୟସରେ ପରଲୋକ ଗମନ କରିଛନ୍ତି। ଏହା ଆମପାଇଁ ଓ ଜନସାଧାରଣ ପାଇଁ ଅପୂରଣୀୟ କ୍ଷତି ହୋଇଛି। ଏହାକୁ କେହି ଅସ୍ୱୀକାର କରିବେ ନାହିଁ। ପରିଶେଷରେ ଆମେ ଉତ୍କଳ ନାୟକ ବିଶ୍ୱନାଥ ସାହୁଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରି ଶୋକ ଓ ଶ୍ରଦ୍ଧାଞ୍ଜଳି ପ୍ରକଟ କରୁଛୁ ।



*ଧର୍ମାନନ୍ଦ ମହିଳା ସମିତି, ପିତଳ (ଗଞ୍ଜାମ)*✦

# ସ୍ମୃତିରେ ବିଶ୍ୱନାଥ ଭାଇନା

ମାଗୁଣିଚରଣ ପଲାଇ

ସେଥିଲେ ବିଶ୍ୱନାଥ। ବିଶ୍ୱର ନାଥ। ତାଙ୍କର ବହୁବିଧ ପ୍ରତିଭାର ପଟାନ୍ତର ନାହିଁ। ଶ୍ରୀଜଗନ୍ନାଥ ଯେମିତି ତାଙ୍କୁ ଜନପ୍ରତିନିଧି ହେବାପାଇଁ ଜନ୍ମ ନେଇଥିଲେ। ତା'ଙ୍କର କର୍ତ୍ତବ୍ୟ, ନିଷ୍ଠା ଏବଂ ଦଳିତଙ୍କ ପାଇଁ ଆବେଗହରା କର୍ତ୍ତବ୍ୟ ଭୁଲି ହୁଏନା।

ମୃତ୍ୟୁ ଏକ ଧ୍ରୁବ ସତ୍ୟ। ପ୍ରତ୍ୟେକ ମଣିଷ ଦିନେ ନା ଦିନେ ଇହଲୀଳା ସମ୍ବରଣ କରିବ, କିନ୍ତୁ କେତେକ ମଣିଷ ସେମାନଙ୍କ ଜୀବନକାଳରେ ସମାଜପାଇଁ ସେବାକରି ବହୁ କଷ୍ଟ ସ୍ୱୀକାର କରିଥାନ୍ତି ଯାହାଦ୍ୱାରା ସେମାନଙ୍କର ମୃତ୍ୟୁପରେ ବି ମନେପଡ଼ନ୍ତି। ସେହି ବ୍ୟକ୍ତିତ୍ୱ ହେଉଛନ୍ତି ବିଶ୍ୱନାଥ ଭାଇନା। ମୁଁ ତା'ଙ୍କୁ ଅତି ନିକଟରୁ ଦେଖିଛି। ଦୁଇ ଦୁଇଥର ବିଧାନସଭାକୁ ନିର୍ବାଚିତ ହୋଇଥାଇ ସେ ତାଙ୍କର ପରିଣତ ବୟସରେ ଅର୍ଥାତ ମୃତ୍ୟୁର ଏକମାସ ପୂର୍ବରୁ ମଟର ସାଇକେଲ୍ ପଛରେ ବସି ଜନସାଧାରଣଙ୍କର ସୁବିଧା ଅସୁବିଧା ବିଭିନ୍ନ ଦପ୍ତରକୁ ଯାଇ ଅଫିସରମାନଙ୍କ ଆଗରେ ଦୃଢ଼ ଦାବି ଉପସ୍ଥାପିତ କରୁଥିଲେ। ସଦାସର୍ବଦା ହସହସ ମୁହଁ ଏବଂ ସେହି ଧୋତି ପଂଜାବୀ ପିନ୍ଧି ତାଙ୍କର ଆତ୍ମଗାରିମା ନଥିବାର ମୁଁ ବାରିଛି। ଦଳମତ ନିର୍ବିଶେଷରେ ତାଙ୍କୁ କେହି ଅସୁବିଧା କଥା କହିଲେ ସେ ସଙ୍ଗେ ସଙ୍ଗେ ଜାଗ୍ରତ ହୋଇ ସେ ସମସ୍ୟାର ସମାଧାନ କରିଛନ୍ତି।




ଆଜିକାଲି ଏମ୍.ଏଲ୍.ଏ ନିର୍ବାଚିତ ହୋଇଗଲା ପରେ ସେମାନଙ୍କର ଠାଣି ବହୁତ ବଦଳି ଯାଉଛି। ଭୁବନେଶ୍ୱରରେ ଘର, ଗାଡ଼ି ଏବଂ ବିଭିନ୍ନ ଅର୍ଥ ଉପାର୍ଜନ କାର୍ଯ୍ୟରେ ପ୍ରାୟ ସମସ୍ତେ ମନପ୍ରାଣ ଢ଼ାଳି ସେ ଦିଗରେ କାର୍ଯ୍ୟ କରୁଛନ୍ତି। କିନ୍ତୁ ବିଶ୍ୱନାଥ ଭାଇନା ତା'ର ଏକ ବ୍ୟତିକ୍ରମ। ତାଙ୍କୁ ଦେଖିଲେ ମନେହୁଏ ଯେପରି ସେ ନିଜର ବଡ଼ଭାଇ ସଦୃଶ, ବ୍ୟବହାର ମଧ ଅତି ମଧୁର।

ଗୋଟିଏ କାନକୁ ଭଲକରି ଶୁଭିଲାନି ବୋଲି ସେ କାନକୁ ଡାକ୍ତରଙ୍କ ପରାମର୍ଶ କ୍ରମେ ଅସ୍ତ୍ରୋପଚାର କରିଥିଲେ। କିନ୍ତୁ ବିଧିର ବିଧାନ ଅସ୍ତ୍ରୋପଚାର ସଫଳ ହୋଇନଥିଲା। ସେ ଶଯ୍ୟାଶାୟୀ ହୋଇଗଲେ। ଶେଷ ନିଶ୍ୱାସ ତ୍ୟାଗ କରିବା ପୂର୍ବରୁ ମୁଁ ତାଙ୍କୁ ଦେଖିବାକୁ ଯାଇଥିଲି। ସେହି ପୁରୁଣାକାଳିଆ ଘର, ପୁରୁଣାକାଳିଆ ଚୌକି, ବେଂଚ୍, ପୁରୁଣା ଚଟାଣ ଇତ୍ୟାଦି। ଯିଏ ତାଙ୍କୁ ଦେଖିଲେ ଭାବିବ ସେ ଜଣେ ରାଜନୈତିକ କର୍ମୀ ମାତ୍ର କିନ୍ତୁ ସେଥିରେ ମହାନ ଏବଂ ଗରିବ, ଭୂମିହୀନ, ଦଳିତମାନଙ୍କର ପ୍ରାଣକର୍ତ୍ତା।

ସେ ଆଜି ନାହାଁନ୍ତି ସତ କିନ୍ତୁ ତାଙ୍କର ହସହସ ମୁହଁ ଢଳେଇ ଢଳେଇ ହାତୀପରି ଚାଲି, ସହାସ୍ୟ ମଟର ସାଇକେଲ୍ ପଛରେ ବସିବା ଭଙ୍ଗି, ବଡ଼ ଭାଇପରି ମଧୁର ବ୍ୟବହାର ଗରିବମାନଙ୍କ ଛାତିରେ ଛାପ ହୋଇ ରହିବ।

ଭାଇନା, ଆରପାରିରେ ସୁଖରେ ଥାଇ ଆମକୁ ଆଶୀର୍ବାଦ କରନ୍ତୁ।

*ପୂର୍ବତନ ସଭାପତି*
*ଗଞ୍ଜାମ ବାର ଆସୋସେସନ, ବ୍ରହ୍ମପୁର*



# ଜଣେ ସାଧାରଣ ମଣିଷଙ୍କର ଅସାଧାରଣ ପ୍ରତିଭା

ପ୍ରଫୁଲ୍ଲ ଜଗନ୍ନାଥ ପାଢ଼ୀ

ଶିକ୍ଷିତ ସମାଜର ଜଣେ ଭଲ ମଣିଷର ସ୍ମୃତିଚାରଣ ଉଦ୍ଦେଶ୍ୟରେ କିଛି ଲେଖିବାକୁ ଇଚ୍ଛା କଲେ କଲମ ଆପେ ଆପେ ଚାଲିଯାଏ। ସମୟର ପ୍ରବହମାନ ସ୍ରୋତରେ ଯେତେ ମଣିଷ ଧରାପୃଷ୍ଠରେ ଜନ୍ମଗ୍ରହଣ କରିଛନ୍ତି ସେମାନେ ସମସ୍ତେ ନିଜ ନିଜ କର୍ତ୍ତବ୍ୟ ସାରି ଏହି ସଂସାରରୁ ବିଦାୟ ନେଇଛନ୍ତି।

ବିଶ୍ୱାସ ହେଉ ନଥିଲେ ମଧ ଏହି କଥାଟି ସତ୍ୟ ଯେ ବିଶ୍ୱନାଥ ସାହୁ ଆଉ ନାହାନ୍ତି। ସେ ଆମ୍ଭମାନଙ୍କ ଗହଣରୁ ଚାଲିଯାଇ ଗୋଟିଏ ବର୍ଷ ପୂରିଗଲାଣି। ତାଙ୍କ ଛବିଟି ମନେପଡ଼ିଗଲେ ଆଖି ଆଗରେ ଝଲକି ଉଠେ ତାଙ୍କର ଧୋତି ପିନ୍ଧା ଗାଁ ମାଟିର ଜଣେ ସାଧାରଣ ମଣିଷର ସୌମ୍ୟ ଚେହେରା ତଥା ନିଷ୍ପାପର ଜ୍ଞାନୀ ବ୍ୟକ୍ତିତ୍ୱ।



ବିଶ୍ୱନାଥ ବାବୁ ଛାତ୍ର ଜୀବନରୁ ଗଣତନ୍ତ୍ର ସମାଜବାଦ ଚିନ୍ତାଧାରାରେ ଓଡ଼ିଶାର ଏବଂ ମୁଖ୍ୟତଃ ଅବିଭକ୍ତ ଗଞ୍ଜାମ ଜିଲାର ଗ୍ରାମ୍ୟ-ତୃଣମୂଳ ସ୍ତରରେ ଗରିବ, ଅଶିକ୍ଷିତ, ଖଟିଖିଆ-ଚାଷିମୂଲିଆ ମଣିଷମାନଙ୍କ ସାମାଜିକ ତଥା ମାନବ ସମ୍ବଳ ବିକାଶପାଇଁ ଅହର୍ନିଶି ଚେଷ୍ଟା କରି ନିଜର ଜୀବନ ସାରା କରିଛନ୍ତି। ତାଙ୍କର ସାମାଜିକ ତଥା ରାଜନୈତିକ ଜୀବନକୁ ଅନୁଧ୍ୟାନ କଲେ ଯେ କେହିହେଲେ ତାଙ୍କୁ ଭାରତୀୟ ବାମପନ୍ଥୀ ଆନ୍ଦୋଳନର ଜଣେ ଜୀବନ୍ତ ପ୍ରତିମା ରୂପେ ରୂପାୟନ କରିପାରିବେ। ଅନେକ ଦୁଃଖ କଷ୍ଟ ମଧ୍ୟରେ ଗତିକରି ସାମାଜିକ ତଥା ରାଜନୈତିକ କ୍ଷେତ୍ରରେ ସଂଖ୍ୟାଧିକ ଭୂମିକାକୁ ସୁଚାରୁରୂପେ ସମ୍ପାଦନ କରିଥାଇ ଜନମାନସରେ ସେ ନିଜର ପରିଚୟ ଛାଡ଼ି ଚାଲିଯାଇଥାଏ। ଭାରତୀୟ କମ୍ୟୁନିଷ୍ଟ ଦଳର ଜଣେ ସାଧାରଣ କର୍ମୀଭାବେ ତଥା ଗାଁ ମାଟିର ସୁଗନ୍ଧକୁ ଆତ୍ମାରେ ସାଇତି ରଖି "ମୋ ଗାଁ ମୋ ମାଟି" ମଣିଥାଇ ତୃଣମୂଳ ସ୍ତରରେ ଲୋକପ୍ରିୟ ହୋଇ ପ୍ରଥମେ ସରପଂ ଓ ପରବର୍ତ୍ତୀ ସମୟରେ ଅଂଚଳର ବିଧାୟକ ପାଇଁ ପ୍ରତ୍ୟକ୍ଷଭାବେ ନିର୍ବାଚିତ ହୋଇ ଅଂଚଳ ଲୋକଙ୍କ ସେବା ତଥା ବିଭିନ୍ନ ଉନ୍ନୟନ କାର୍ଯ୍ୟ ସାଧନ ପାଇ ନୀତି ନିର୍ଦ୍ଧାରଣ କରିବାର ସୁଯୋଗ ପାଇପାରିଥିଲେ। ତାଙ୍କର ବିଧାନସଭା କ୍ଷେତ୍ରରେ ଶିକ୍ଷା ତଥା ଜଳସେଚନ କ୍ଷେତ୍ରରେ ବିଭିନ୍ନ ଉନ୍ନୟନ ପ୍ରକଳ୍ପ କାର୍ଯ୍ୟକ୍ଷମ କରି ପ୍ରଜାବନ୍ଧୁଭାବେ ଲୋକପ୍ରିୟ ମଧ ହୋଇପାରିଛନ୍ତି।

ସଂଗ୍ରାମୀ ଜୀବନ। ସଂଘର୍ଷମୟ ପରିବେଶ ତଥା ଅସୀମ

ସମସ୍ୟା ମଧ୍ୟରେ ରହି ମଧ୍ୟ ତାଙ୍କ ଚେହେରାରେ କେବେହେଲେ ଅତୃପ୍ତିର ଚିହ୍ନ ପରିଲକ୍ଷିତ ହେଉନଥିଲା। ତାଙ୍କର ସ୍ପଷ୍ଟବାଦୀ ଚିନ୍ତାଧାରା ତଥା ଠୋକଠୋକ କଥାବାର୍ତ୍ତା ଭିତରେ ଲୁଚି ରହିଥିବା ସ୍ନେହ ଶ୍ରଦ୍ଧା ଏବଂ ଆତ୍ମବିଶ୍ୱାସକୁ ଯେଉଁମାନେ ଅନୁଭବ କରିଛନ୍ତି, ସେମାନେ ପ୍ରଥମ ସାକ୍ଷାତରେ ହିଁ ତାଙ୍କୁ ନିଜର କରିପାରୁଥିଲେ।

ସମାଜର ସମୂହ କଲ୍ୟାଣ ତଥା ଅଭିନ୍ନ ମାନବିକତାର ପ୍ରଚାର ପ୍ରସାର ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା ତାଙ୍କର ଦିନଚର୍ଯ୍ୟା ତଥା ନିତ୍ୟକର୍ମ ମଧ୍ୟରେ ସେ ବିଭିନ୍ନ ଖବର କାଗଜ ଓ ପୁସ୍ତକ ପଢ଼ାପଢ଼ି କରି ଜାତୀୟ ତଥା ଆନ୍ତର୍ଜାତୀୟ ରାଜତନ୍ତ୍ର ତଥା ଅର୍ଥତନ୍ତ୍ର ଉପରେ ଅଗାଢ଼ ଜ୍ଞାନ ଅର୍ଜନ କରିଥିଲେ। ମୋର ଛାତ୍ର ଜୀବନରେ ବିଭିନ୍ନ କ୍ଷେତ୍ରରେ ଯେତେବେଳେ ଯେଉଁଭଳି ତାଙ୍କ ସହିତ ସାକ୍ଷାତ ତଥା ଆଲୋଚନାର ସୁଯୋଗ ମୋତେ ମିଳିଛି ସେ ପୃଥିବୀର ବିଭିନ୍ନ ରାଷ୍ଟ୍ରର ତତ୍କାଳୀନ ସଭ୍ୟ ସାମାଜିକ ତଥା ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ ମୋତେ ଓ ମୋପରି ଅନେକ ଲୋକଙ୍କୁ ଦିଗଦର୍ଶନ ଦେଇଥିବା କଥା ମୁଁ ଅନୁଭବ କରିଛି।

ଅଧିବକ୍ତାଭାବେ ମୁଁ ଆଇନସେବା କ୍ଷେତ୍ରରେ ଯୋଗଦେବା ପରେ ନିଜର ବୃତ୍ତିରେ ମୋର ଅନେକ ସମୟ ବିତି ଯାଇଥାଏ। ତତ୍ ସଙ୍ଗେ ସଙ୍ଗେ ବିଭିନ୍ନ ଜଞ୍ଜାଳ ମଧ୍ୟରେ ରହି ତାଙ୍କ ସହିତ ଦେଖାସାକ୍ଷାତରେ କିଛିଟା ବ୍ୟବଧାନ ହୋଇଥିଲେ ମଧ୍ୟ ସେ ମୋ ପରିବାରର ଯେକୌଣସି ବ୍ୟକ୍ତିଙ୍କ ସହିତ ସଭାସମିତି କିମ୍ବା ଭୋଜିଭାତରେ ସାକ୍ଷାତ ହେଲେ ନିଶ୍ଚୟ ମୋକଥା ପଚାରି ବୁଝୁଥାନ୍ତି।

ବିଶ୍ୱନାଥ ବାବୁ ସ୍ମୃତି ହୋଇ ରହିଗଲେ ସତ; କିନ୍ତୁ ସେ ଯେଉଁଠାରେ ଥାଆନ୍ତୁ ନା କାହିଁକି ଆମ୍ଭମାନଙ୍କ ଭଳି ତାଙ୍କର ଶୁଭେଚ୍ଛୁମାନଙ୍କ ଉପରେ ଆଶୀର୍ବାଦ ଢ଼ାଳୁ ଥାଆନ୍ତୁ ଏବଂ ତାଙ୍କ ଗୁଣଗାନ କରିବାର ସୁଯୋଗ ଆମକୁ ବାରମ୍ବାର ମିଳୁଥାଉ।

*ଅଧିବକ୍ତା, ବ୍ରହ୍ମପୁର (ଗଞ୍ଜାମ)*





# ଗଞ୍ଜାମରେ ରକ୍ତପ୍ରଭାତର ଅନ୍ୟତମ ରଥୀ

# କମ୍ରେଡ୍ ବିଶ୍ୱନାଥ ସାହୁଙ୍କୁ ସଲାମ୍

ଦଣ୍ଡପାଣି ମହାନ୍ତି

ମୋର ବିଶ୍ୱନାଥ ବାବୁଙ୍କ ସହ ୧୯୬୭ ମସିହାରୁ ପରିଚୟ । ଗଞ୍ଜାମ ଜିଲ୍ଲାର ଚାଷୀଙ୍କୁ କ୍ୟୁମ୍ୟନିଷ୍ଟ ପାର୍ଟି ସଙ୍ଗଠିତ କରି ଆନ୍ଦୋଳନ କରିଥିବା ଓ ଚାଷୀ ଅଧିକାର ହାସଲ କରିଥିବା ଲଢ଼େଇର ଅନ୍ୟତମ ରଥି ବିଶ୍ୱନାଥ ବାବୁ ଥିଲେ, ଛାତ୍ର ଅବସ୍ଥାରୁ ସେ କମ୍ୟୁନିଷ୍ଟ ଆଦର୍ଶ ପ୍ରତି ଆଗ୍ରହ ପ୍ରକାଶ କରି କମ୍ୟୁନିଷ୍ଟ ପାର୍ଟିରେ ଯୋଗଦାନ କରିଥିଲେ । ୧୯୬୭ ମସିହା ବିଧାନସଭା ନିର୍ବାଚନ ସମୟରେ ମୁଁ ଆସିକାରୁ କବିସୂର୍ଯ୍ୟନଗର ନିର୍ବାଚନ ମଣ୍ଡଳୀରେ କମ୍ୟୁନିଷ୍ଟ ପାର୍ଟିର ପ୍ରଚାର କାର୍ଯ୍ୟରେ ଯାଇଥିଲି । ସେତେବେଳେ କଂଗ୍ରେସ ଜଗନ୍ନାଥ ସ୍ୱାମୀ, ଭିମ ନାୟକ, ମହନ୍ତର ନାୟକ ଆମେ ମୋଟ ୪ଜଣ କବିସୂର୍ଯ୍ୟନଗରଠାରେ କମ୍ୟୁନିଷ୍ଟ ପାର୍ଟି ନିର୍ବାଚନ ପ୍ରଚାର ଅଫିସ ଖୋଲି କାର୍ଯ୍ୟକ୍ରମ ହାତକୁ ନେଇଥିଲୁ । ପରେ ଟ୍ରେଡ୍ ୟୁନିୟନ ନେତା ହରିବନ୍ଧୁ ବେହେରା ଆସି ଆମ ସହ ସାମିଲ ହୋଇଥିଲେ । ପ୍ରତିଦିନ ଉକ୍ତ ସାଥୀମାନେ ସାଇକେଲରେ ପୋଷ୍ଟର, ପ୍ରଚାର ପତ୍ର, ଟିଣଚୁଙ୍ଗା ଧରୀ ନିର୍ବାଚନ ପ୍ରଚାରରେ ଚାଲିଯାଆନ୍ତି, ମୋର କାର୍ଯ୍ୟ ଅଫିସ ଖୋଲି ବସିବା ଓ ସେମାନଙ୍କ ଚିଠିଧରି ଆସିବା ବ୍ୟକ୍ତିଙ୍କୁ ପ୍ରଚାରପତ୍ର ପତାକା ପ୍ରଦାନ କରିବା ମୁଖ୍ୟ କାମ ଥିଲା । ଭୋଟ ପ୍ରଚାର କାର୍ଯ୍ୟ ପାଇଁ ଦା' ଧାନ ଶୀଷା ଚିହ୍ନ ଥିବା କୁପନ୍ (ଚାନ୍ଦା) ସଂଗ୍ରହକରି ଅଫିସରେ ଜମା ଦେବାପାଇଁ ପ୍ରେରଣା ଦେବା ଏକାର୍ଯ୍ୟ ଗୁଡ଼ିକ ମତେ କରିବାକୁ ପଡୁଥାଏ । ସେହି ବର୍ଷ ପ୍ରଥମକରି କବିସୂର୍ଯ୍ୟନଗର ନିର୍ବାଚନ ମଣ୍ଡଳି ସୃଷ୍ଟି ହୋଇଥାଏ (ସାନଖେମୁଣ୍ଡି ବ୍ଲକକ, ଶେରଗଡ଼ ବ୍ଲକର କେତେକ ପଂଚାୟତ କବି ସୂର୍ଯ୍ୟନଗର ବ୍ଲକକୁ ନେଇ) କମ୍ୟୁନିଷ୍ଟ ମାନଙ୍କ ପ୍ରଭାବ ସାନ ଖେମଣ୍ଡି ଓ ଶେରଗଡ଼ ବ୍ଲକରେ ବ୍ୟାପକରୂପେ ରହିଯାଏ – କବିସୂର୍ଯ୍ୟନଗର ବ୍ଲକରେ କମ୍ୟୁନିଷ୍ଟମାନଙ୍କର କୌଣସି ପ୍ରଭାବ ନଥିଲା । କେବଳ ଏମ୍ ଜଗନ୍ନାଥ ସ୍ୱାଇଁ ଓ ମହନ୍ତର ନାୟକଙ୍କ ବ୍ୟକ୍ତିଗତ ସମ୍ପର୍କ ଓ ରାଜ୍ୟ ସୋସାଲିଷ୍ଟ ଗୋଷ୍ଠୀଙ୍କୁ ଆଧାର କରି ଭୋଟଗାଡ଼ିକୁ ଗଡ଼େଇବା ଦାୟିତ୍ୱ ଆମମାନଙ୍କର ଥିଲା । ସାନି ନିର୍ବାଚନରେ ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ ବିଧାୟକ ପ୍ରାର୍ଥୀ ଥିଲେ । ଗୋବିନ୍ଦ ପ୍ରଧାନ ନିର୍ବାଚନ ପରିଚାଳନା ସାନଖେମୁଣ୍ଡି ଶେରଗଡ଼ ଅଂଚଳରେ କରୁଥିଲେ । ସେ ନିର୍ବାଚନରେ ପରେ ଏକ ଦୁର୍ଘଟଣାରେ ଗୋବିନ୍ଦ ପ୍ରଧାନ ସବୁଦିନ ପାଇଁ ଅଚଳ ହୋଇଗଲେ ।

ଦିନେ ମୁଁ ଅଫିସ ଖୋଲି ବସିଛି । ହଠାତ୍ ଜଣେ ଡ଼େଙ୍ଗା ବ୍ୟକ୍ତି ଏକ ଭଙ୍ଗା ଠେଲା ଜିପରେ ଆସି ଆମ ଅଫିସ ଭିତରକୁ ପଶିଆସିଲେ ଓ ପ୍ରଶ୍ନ କଲେ ସବୁ କୁଆଡ଼େ ଗଲେ ? ମୁଁ କହିଲି ସମସ୍ତେ ପ୍ରଚାର କାର୍ଯ୍ୟରେ ଯାଇଛନ୍ତି । ସେ ପ୍ରଶ୍ନ କଲେ ଖାଇବାକୁ ଅଛି କି ? ମୁଁ ଆଶ୍ଚର୍ଯ୍ୟ ହେଲି । ପ୍ରଶ୍ନ କଲି ଆପଣ କିଏ ? ତାପରେ ଉତ୍ତର ପାଇଲି ମୁଁ ବିଶ୍ୱନାଥ ସାହୁ ଗଞ୍ଜାମ ଜିଲ୍ଲା ପାର୍ଟି ସେକ୍ରେଟାରୀ । ଏହାପରେ ମୋର ଉତ୍କଣ୍ଠା ବଢ଼ିଗଲା । ସେ ତାଙ୍କ ଟିପାଖାତା ବାହାର କରି ପୋଷ୍ଟର, ପ୍ରଚାରପତ୍ର, ପତାକା, କୁପନ୍ ବାହାରକରି ମତେ ଦେଲେ ଓ ସେସବୁ ପାଇବା ରସିଦ ମତେ ମାଗି, ମୋ ଠାରୁ ରସିଦ ରଖିବାର ଜରୁରୀ ଆବଶ୍ୟକତା ସମ୍ପର୍କରେ କହିଲେ । ଆଦର ସହକାରେ ଅଫିସରେ ରାନ୍ଧିଥିବା ଭାତ-ଡ଼ାଲମା ଖଲିରେ ଖାଇବାକୁ ଦେଲି । ଖାଇବାରେ ତାଙ୍କର କୌଣସି ବାଛବିଚାର

ନଥିଲା। ଖାଦ୍ୟ ରନ୍ଧା ଠିକ୍ ହୋଇଛି କହି ସେଠାରୁ ସେ ଚାଲିଗଲେ ନିଜେ ଗାଡ଼ି ଠେଲି ଷ୍ଟାର୍ଟ କଲେ। ରାତ୍ର ଅନ୍ୟ ସାଥୀମାନେ ଫେରିବା ପରେ ତାଙ୍କ ବିଷୟରେ ବହୁ କଥା ପ୍ରଶଂସା) ଶୁଣିବାକୁ ପାଇଲି ଓ ସେ ତାକରଡ଼ା ଆନ୍ଦୋଳନ ସମୟରେ ଗୁପ୍ତକାର୍ଯ୍ୟରେ ଲିପ୍ତଥିବା କଥା ଶୁଣି ମତେ ଆଶ୍ଚର୍ଯ୍ୟ ଲାଗୁଥିଲା। ନିର୍ବାଚନ ଶେଷହେଲା, ସେ ନିର୍ବାଚନରେ ଗଞ୍ଜାମରୁ ୩ଜଣ ବିଧାୟକ କମ୍ୟୁନିଷ୍ଟ ବିଧାୟକ, ସାଥୀ ହରିହର ଦାଶ, ଦଣ୍ଡପାଣି ସ୍ୱାଇଁ, ନିର୍ବାଚିତ ହୋଇଥିଲେ ଓଡ଼ିଶାରେ ୭ଜଣ କମ୍ୟୁନିଷ୍ଟ ସି.ପି.ଆଇ ବିଧାୟକଙ୍କ ସି.ପି.ଏମ୍‌ର ୨ଜଣ ଓ ପ୍ରଜା ସୋସାଲିଷ୍ଟ ଓ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ବିଧାୟକମାନେ ନିର୍ବାଚିତ ହୋଇଥିଲେ। ନିର୍ବାଚନ ପରେ ମୁଁ ଘରକୁ ଓ ସ୍କୁଲକୁ ଫେରିଲି। କିନ୍ତୁ ସ୍କୁଲରୁ ମୋର ନାମକୁ କାଟି ଦିଆଯାଇଥିଲା ତାର କାରଣ ପ୍ରଧାନଶିକ୍ଷକଙ୍କୁ ପଚାରିବାରୁ ସେ କହିଲେ ୨ମାସ ଧରି ବିନା ଛୁଟି ଦରଖାସ୍ତ ସେ ସ୍କୁଲରେ ଅନୁପସ୍ଥିତ ଓ ଏକାଦଶ ଶ୍ରେଣୀ ଟେଷ୍ଟ ପରୀକ୍ଷାରେ ଅନୁପସ୍ଥିତ, ପରୀକ୍ଷା ବର୍ଜନ କରି ଧର୍ମଘଟ କରିବା ଯୋଗୁଁ ତୁମନାମକୁ କାଟି ଦିଆଗଲା। ଯେତେ ଅନୁରୋଧ କଲେ ମଧ୍ୟ ମୋ କଥା ପ୍ରଧାନଶିକ୍ଷକ ଶୁଣିବା ଅବସ୍ଥାରେ ନଥିଲେ। ମନ ଦୁଃଖରେ ସ୍କୁଲରୁ ଘରକୁ ଫେରିଲି। ଏକାଦଶ ପାସ ହୋଇପାରିଲି ନାହିଁ ବୋଲି ବଡ଼ ମନଦୁଃଖରେ କାଳ କାଟୁଥାଏ। ଆମ ବ୍ରାଂ ସମ୍ପାଦକ ଡାକ୍ତର ପ୍ରଫୁଲ୍ଲ ପାଢ଼ୀ ମଧ୍ୟ ବିଧାୟକ ହରିହର ଦାଶଙ୍କୁ କହିଲେ ସେ କିଛି ପଦକ୍ଷେପ ନେଲେ ନାହିଁ। ପରେ ମୋର ପଢ଼ା ବନ୍ଦକଥା ବିଶ୍ୱନାଥ ବାବୁଙ୍କ ଦୃଷ୍ଟିକୁ ଅଣାଗଲା। ସେ ସଙ୍ଗେ ସଙ୍ଗେ ଗୋଟିଏ ଚିଠି ବିଧାୟକ ଦଣ୍ଡାପାଣି ସ୍ୱାଇଁଙ୍କୁ ଆଉ ଗୋଟିଏ ଚିଠି ଶିକ୍ଷକ ଲଡୁକିଶୋର ସ୍ୱାଇଁଙ୍କୁ ଲେଖି ମତେ ୫ ଟଙ୍କା ଗାଡ଼ିଭଡ଼ା ପାଇଁ ଦେଲେ ଓ ଉକ୍ତ ଚିଠି ଧରି ଗୌତମୀ ଯିବାପାଇଁ କହିଲେ। ଗୌତମୀରେ ହାଇସ୍କୁଲ ପରିଚାଳନା ଦାୟିତ୍ୱରେ କମ୍ୟୁନିଷ୍ଟ ଶିକ୍ଷକମାନେ (ପଦ୍ମତୋଲାର ପାଣ୍ଡବ ସ୍ୱାଇଁ, ଗୌତମୀର ଲଡୁକିଶୋର ସ୍ୱାଇଁ, କଲେରାପଦରର ଲିଙ୍ଗରାଜ ପଟ୍ଟନାୟକ) ଥିଲେ, ମୁଁ ଗଣିଆନାଳ ଛକରେ ବସରୁ ଓହ୍ଲାଇ ଗୌତମୀକୁ ଗଲି ଓ ସେଠାରେ ଚିଠି ଦେବାପରେ ମୋର ସେଠାରେ ରହିବା ବ୍ୟବସ୍ଥା ହେଲା। ଖାଇବା ବ୍ୟବସ୍ଥା ବିଧାୟକଙ୍କ ଘରେ ଓ ଲଡୁ ମାଷ୍ଟ୍ରଙ୍କ ଘରେ ସେମାନେ ସ୍ଥିରକଲେ ଗୌତମୀ ସ୍କୁଲ ଜରିଆରେ ବୋର୍ଡ଼ ପରୀକ୍ଷା ଦେଇ ପରେ କୃତକାର୍ଯ୍ୟ ହେଲି। ତାପରେ ୧୯୬୭ ପରଠାରୁ ମୋ ମନ ଭିତରେ ବିଶ୍ୱନାଥ ବାବୁଙ୍କ ପ୍ରତି ଅଶେଷ ସମ୍ମାନ ବୃଦ୍ଧି ଘଟିଲା। କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ୧୯୬୯ ସାଲରେ ଖାଦ୍ୟ ଆନ୍ଦୋଳନ ଭୁବନେଶ୍ୱରରେ ହେଉଥିଲା। ଉକ୍ତ ଆନ୍ଦୋଳନ କମ୍ୟୁନିଷ୍ଟ ପାର୍ଟିମାନଙ୍କ ପକ୍ଷରୁ ଆହ୍ୱାନ ଦିଆ ଯାଇଥିଲା। ଗିରଫ


ସିପିଆଇର ତିନି ରଥୀ : ଗୁରୁଚରଣ ପଟ୍ଟନାୟକ, ବିଶ୍ୱନାଥ ସାହୁ ଏବଂ ଅବନୀ ବରାଳ

ବ୍ୟକ୍ତିଙ୍କୁ ନେଇ ଖଣ୍ଡଗିରି ଛକ ଟପିବାପରେ ଛାଡ଼ି ଦେଉଥିଲେ। ସେଠାରୁ ଚାଲି ଚାଲି ବିଧାୟକ କଲୋନୀକୁ ଆସିବାକୁ ପଡୁଥିଲା। ସପ୍ତାହବ୍ୟାପି ଏ ଆନ୍ଦୋଳନରେ ଗଞ୍ଜାମରୁ ହଜାର ହଜାର କର୍ମୀ ଅଂଶଗ୍ରହଣ କରିଥିଲେ। ଆନ୍ଦୋଳନକାରୀମାନେ ଆଇନ ହାତକୁ ନେବା ପୂର୍ବରୁ ପୋଲିସ ଅଟକ କରୁଥିବାରୁ ଆମ ମନରେ ଅସନ୍ତୋଷ ସୃଷ୍ଟି ହୋଇଥିଲା। ଆନ୍ଦୋଳନର ୩ୟ ଦିନରେ ନେତାମାନେ ଆଗରେ ରହିଥାନ୍ତି। ଆମେ କେତେଜଣ ଆଇନକୁ ନେବାକୁ ଗୁପ୍ତରେ ସ୍ଥିର କରିଥିଲୁ। ଆଜିର ଇନ୍ଦିରା ଗାନ୍ଧି ପାର୍କ ସେତେବେଳେ ପରେଡ଼ ପଡ଼ିଆ ରୂପରେ ରହିଥିଲା। ଶୋଭାଯାତ୍ରାରେ ମୁଁ ବିଶ୍ୱନାଥ ବାବୁଙ୍କ ପାଖପାଖରେ ଚାଲିଥାଏ। ପୋଲିସ ଗିରଫ କରିବା ପୂର୍ବରୁ ମୁଁ ଆଇନ ଦାୟିତ୍ୱରେ ଥିବା ଏସ୍.ପିଙ୍କ ଲାଠିକୁ ଯୋର ଜବରଦସ୍ତ ଛଡ଼ାଇ ଧରି ପରେଡ଼ ପଡ଼ିଆ ଆଡ଼େ ଦୌଡ଼ିଲି। ତାପରେ ପୋଲିସ ଲାଠିଚାର୍ଜ କଲା ଓ ଉଣା ଅଧିକେ ସବୁ ନେତାଙ୍କ ଧୋତି ଚିରିଲା ତ, ମତେ ପୋଲିସ ଗୋଡ଼ାଇ ଗୋଡ଼ାଇ ଧାଇଁ ଉତ୍ତମ-ମଧ୍ୟମ କଲେ ଓ ନେତାମାନେ ଅର୍ଦ୍ଧଉଲଗ୍ନ ଅବସ୍ଥାରେ ପୋଲିସ ଗାଡ଼ିରେ ବୁହା ହେଲେ। ଖଣ୍ଡଗିରିରେ ପହଂଚିବା ପରେ ସବୁନେତା ମୋ ଉପରେ ଖଡ଼ଗହସ୍ତ। କିନ୍ତୁ ବିଶ୍ୱନାଥ ବାବୁ ସମସ୍ତଙ୍କୁ ଅତି ସରଳଭାବେ ବୁଝାଇଲେ। ମୁଁ କାହିଁକି ଲାଠି ଛଡ଼ାଇଲି ଏବଂ ଲାଠି ଛଡ଼ାଇବା ବିଚାରକୁ ସମର୍ଥନ ଜଣାଇଲେ। ସେତେବେଳେ ମୋ ମନରେ ଗର୍ବ କହିଲେ ନସରେ। ପାର୍ଟିରେ ମୋତେ ଖୋଦ ଜିଲ୍ଲା ସମ୍ପାଦକଙ୍କ ସମର୍ଥନ ମତେ ମାନସିକ ସ୍ତରରେ ପ୍ରେରଣା ମିଳିଲା। ଠିକ୍ ଏହି ସମୟରେ, ନକସଲବାଡ଼ିରେ ବସନ୍ତର ମେଘ ଗର୍ଜନ ଓ ସେ ବିଷୟରେ ଖବର କାଗଜମାନଙ୍କରେ ଆସୁଥିବା ଖବରକୁ ମୁଁ ନଜର ରଖିଥାଏ। ଓ ଛାତ୍ରନେତା କମ୍ରେଡ଼ ରମେଶ ସାହୁ (୨୨.୧୨.୧୯୬୯) ରଙ୍ଗ ମାଟିଆ ଏନ୍‌କାଉଂଟରରେ ସହିଦ) ତାଙ୍କ ସହ ମୋର ଯୋଗାଯୋଗ ସୃଷ୍ଟି ହୋଇସାରିଥାଏ ଭାରତୀୟ କମ୍ୟୁନିଷ୍ଟ ସଭ୍ୟ ମହଲରେ ନକସଲବାଡ଼ି ଆନ୍ଦୋଳନ ସପକ୍ଷରେ ପ୍ରଚାର କାର୍ଯ୍ୟ ଆରମ୍ଭ କରାଯାଇଥାଏ। ଏହି ସମୟରେ (୧୯୬୯) ଚମାଖଣ୍ଡିରେ ପାର୍ଟି ରାଜନୈତିକ ଶିକ୍ଷା ଶିବର ଅନୁଷ୍ଠିତ ହୁଏ ଏଥିରେ ମୁଁ ଯୋଗଦେଇ କମ୍ୟୁନିଷ୍ଟ ପାର୍ଟିର ବିଚାର-ଆଚାର ଇତ୍ୟାଦି ବହୁ ତଥ୍ୟଗତ କଥା ଶିକ୍ଷା ନେଇଥିଲି ଓ ସେଠାରେ ବିଶ୍ୱନାଥ ବାବୁ ମୁଖ୍ୟ ପରିଚାଳନା ଦାୟିତ୍ୱରେ ରହି ଖାଦ୍ୟ, ରହିବା ଶିକ୍ଷା, ତର୍କ, ବିତର୍କ ଇତ୍ୟାଦି ବିଷୟ ତଦାରଖ କରୁଥିଲେ। ମୁଁ ସେ ସମୟରେ ବିଶ୍ୱନାଥ ବାବୁଙ୍କ ଏକାଗ୍ରତା, ନିଷ୍ଠା, ମୂରବୀପଣିଆକୁ ଅଙ୍ଗେ ନିଭାଇଛି। ରାଜନୀତିର ଘନଘଟା ମଧ୍ୟରେ ୨୦୦୪ରେ ରାଜ୍ୟ ସରକାର ନକସଲପନ୍ଥୀମାନଙ୍କ ସହ ଆଲୋଚନା ପ୍ରସ୍ତାବ ପ୍ରଦାନ କଲେ। ମୁଁ ଦମନ ପ୍ରତିରୋଧ ମଂଚର ଆବାହକ ରୂପେ ସେତେବେଳେ ଉକ୍ତ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ଦାୟିତ୍ୱ ପରିପ୍ରେକ୍ଷୀରେ ରାଜ୍ୟର ବହୁ ବାମପନ୍ଥୀ, ପ୍ରଗତିଶୀଳ, ଗଣତାନ୍ତ୍ରିକ ବ୍ୟକ୍ତିବିଶେଷଙ୍କ ସହ ମତ ବିନିମୟ ହୋଇଥିଲା। ସେତେବେଳେ ରାଜ୍ୟର ଆଦିବାସୀ -ଦଳିତଙ୍କ ସମସ୍ୟାଗୁଡ଼ିକ ବିଶ୍ୱନାଥ ବାବୁଙ୍କ ସହ ଦୀର୍ଘ ଆଲୋଚନା ହୋଇଥିଲେ। ସେ ସମୟରେ ବିଶ୍ୱନାଥ ବାବୁ ଏ ଆଲୋଚନାକୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ କେତେକ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ମତେ ଦେଇଥିଲେ। ତାହା ଅତ୍ୟନ୍ତ ସ୍ମରଣୀୟ କାରଣ ନବୀନ ଆଲୋଚନା କରିବ ନାହିଁ। ଲୋକଙ୍କୁ ଧୋକାଦେବ ଓ ଏକଥା ସେ ବାରମ୍ବାର କହିଥିଲେ। ୧୪.୦୯.୨୦୦୪ ଜନଗର୍ଜନ ସମାବେଶ ଓ ପରେ ମୁଖ୍ୟମନ୍ତ୍ରୀଙ୍କ ସହ ଆମ ପ୍ରତିନିଧି ଦଳର ଆଲୋଚନା ଓ ସଭାସାରି ଫେରିବା ସମୟର ଦମନ, ଗିରଫ ଇତ୍ୟାଦି ଘଟଣା ଘଟିବାପରେ ବିଶ୍ୱନାଥ ବାବୁ ଜନତାଙ୍କ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତିଭାବେ ଆଗରୁ ଅନୁଭବ କରିଥିଲି।

ପୁଣି ୨୦୧୧, ୨୦୧୨ରେ ବିଶ୍ୱନାଥ ବାବୁଙ୍କୁ ଅତି ନିକଟରୁ ଆଲୋଚନା ଓ ପରାମର୍ଶକୁ ମୁଁ ଗ୍ରହଣ କରିଛି। ସେ ସମୟରେ ମାଲକାନଗିରୀ ଜିଲ୍ଲାପାଳ, ଇଟାଲି ନାଗରିକ ଓ ଲକ୍ଷ୍ମୀପୁର ବିଧାୟକଙ୍କୁ ମାଓବାଦୀମାନେ ଅଟକ ରଖିବାପରେ ମୋ ସମେତ ଅନ୍ୟ ରାଜ୍ୟର ୩ଜଣ ବ୍ୟକ୍ତି ଯଥା ଆର୍.ଏସ୍.ରାଓ, ଜି. ହରଗୋପାଳ ଓ ବି.ଡ଼ି. ଶର୍ମାଙ୍କୁ ମଧ୍ୟସ୍ଥି

ପାଇଁ ବିଭିନ୍ନ ଦଫାରେ ଘୋଷଣା ହୋଇଥିଲା ଓ ମାଓବାଦୀ ଦଳ ଦାବୀ ପଢ଼ି ଘୋଷଣା କରିଥିଲେ । ଆମେ ସମସ୍ତେ ମଧ୍ୟସ୍ଥି ଉକ୍ତ ଦାବୀଗୁଡ଼ିକର ଯୁକ୍ତିଯୁକ୍ତତା ଓ ପକ୍ଷ, ମତାମତ ସଂଗ୍ରହପାଇଁ ରାଜ୍ୟର ବହୁ ବାମପନ୍ଥୀ, ଗଣତାନ୍ତ୍ରିକ ଓ ପ୍ରଗତିଶୀଳତା ବ୍ୟକ୍ତିଙ୍କୁ ଯୋଗାଯୋଗ କରି ସେମାନଙ୍କ ପରାମର୍ଶକୁ ଗ୍ରହଣ କରି ଦାବୀ ସପକ୍ଷ ଯୁକ୍ତି ସରକାରଙ୍କ ନିକଟରେ ଉପସ୍ଥାପିତ କରୁଥିଲୁ ସେହି କ୍ରମରେ ବିଶ୍ୱନାଥ ବାବୁଙ୍କ ସହ ୩ଥର ସାକ୍ଷାତ ଆଲୋଚନା ହୋଇଥିଲା । ସେତେବେଳ ସେ ମାଓବାଦୀଙ୍କ ଦ୍ୱାରା ଉପସ୍ଥାପିତ ଦାବୀଗୁଡ଼ିକର ଯଥାର୍ଥତା ପକ୍ଷରେ ରାଜ୍ୟ ବାହାରୁ ଆସିଥିବା ମଧ୍ୟସ୍ଥିଙ୍କୁ ପରାମର୍ଶ ପ୍ରଦାନ କରିଥିଲେ ଓ ଅପହରଣ କିମ୍ବା ମୁଣ୍ଡ ଜାମିନ ରଖି ଦାବୀ ହାସଲ ପଦକ୍ଷେପ ଉଚିତ ନୁହେଁ । ଏଣୁ ତୁରନ୍ତ ସମାଧାନ ପାଇଁ ପ୍ରୟାସ କରିବାକୁ ଦୃଢ଼ ରୂପେ କହିଥିଲେ, ଗୋଳିଆ ପାଣିରୁ ମାଛ ଧରିବା ପରି ଲୋକଙ୍କ ପାଇଁ ଯାହା ସମ୍ଭବ ବେଶି ଆଶା ନକରି ଜଟିଳ ପରିସ୍ଥିତିକୁ ସମାଧାନ ଆବଶ୍ୟ ବୋଲି ମତ.ପ୍ରଦାନ କରିଥିଲେ । ଏଥିରୁ ଲୋକଙ୍କ ପ୍ରତି ଓ କମ୍ୟୁନିଷ୍ଟ ବିପ୍ଲବୀଙ୍କ ପ୍ରତି ତାଙ୍କର ଆବେଗତାକୁ ମୁଁ ଅନୁଭବ କରିଥିଲି । ମୋର ତାଙ୍କ ସହ ବିଭିନ୍ନ ସମୟରେ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଦେଖାହୁଏ ଓ ତାଙ୍କଠାରୁ ଲୋକଙ୍କ ସମସ୍ୟା ଓ ଜନଆନ୍ଦୋଳନ ସୃଷ୍ଟି ବିଷୟରେ ଉପାଦେୟ ପରାମର୍ଶ ପାଇଥାଏ ତାଙ୍କ ସହ ମୋର ଶେଷ ଦେଖା ଏପ୍ରିଲ ୩୦, ୨୦୧୫ରେ ଏମ୍.କେ.ସି.ଜି. ମେଡ଼ିକେଲର ମେଡ଼ିସିନ୍ ୱାର୍ଡ଼ରେ ହୋଇଥିଲା । ମତେ ରାଜ୍ୟ ସରକାର ୨୫ଟି ମିଥ୍ୟା ମକଦ୍ଦମାରେ ୦୮.୦୨.୨୦୧୩ରେ ଗିରଫ କରି ଆର୍. ଉଦୟଗିରି, ପାରଳାଖେମୁଣ୍ଡି ଓ ବ୍ରହ୍ମପୁର ଜେଲରେ ରଖିଥାନ୍ତି । ମୁଁ ଜେଲରେ ରାଜନୈତିକ ବନ୍ଦୀର ମାନ୍ୟତା ପାଇଁ ହାଇକୋର୍ଟରେ ମକଦ୍ଦମା ସମେତ ଜେଲରେ ଅନଶନ କରି ଜନମତ ସୃଷ୍ଟିପାଇଁ ପ୍ରୟାସ କରୁଥିଲି । ସେହି କ୍ରମରେ ବ୍ରହ୍ମପୁର ଜେଲ୍‌ରେ ଅନଶନର ୧୦ମ ଦିନରେ ମତେ ଜେଲ କର୍ତ୍ତୃପକ୍ଷ ମେଡ଼ିକାଲକୁ ସ୍ଥାନାନ୍ତର କରିଲେ । ମୁଁ ମେଡ଼ିକାଲରେ ଥିବା ସମୟରେ ଏପ୍ରିଲ ୩୦ତାରିଖ ଦିନ ସାଥୀ ସାହୁଙ୍କ ସହ ମୋର ଶେଷ ଦେଖା ହେଲା । ପୋଲିସ ଘେରଭିତରେ ଥିବାବେଳେ ତାଙ୍କର ଛାତ୍ର ଜୀବନରୁ ତାକରଡ଼ା ଚାଷୀ ଆନ୍ଦୋଳନ, ବିଧାୟକ ଥାଇ ବିଧାସଭାରେ ଉପସ୍ଥିତ ଥିବା ସମୟରେ ପ୍ରତାପ ସ୍ୱାଇଁ ହତ୍ୟା କେଶରେ ତାଙ୍କୁ କିପରି ଜଡ଼ିତ କରି ଜେଲରେ ରଖାଯାଇଥିଲା ଓ ଜେଲରୁ ରାଷ୍ଟ୍ରପତି ନିର୍ବାଚନରେ ଭାଗନେବା ପାଇଁ ବିଧାନସଭାକୁ ଯାଇ ଭୋଟ ଦେଲେ ଓ ଭୋଟଦେବା ପରେ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସହ ମିଥ୍ୟା କେଶ ବିଷୟରେ ଆଲୋଚନା କଲେ ତାହା ମୋ ପାଇଁ ବିରାଟ ଉପଦେଶ ଥିଲା । ରାଷ୍ଟ୍ରର ଦମନ ଶେଷକଥା ନୁହେଁ । ଶୋଷିତ ଜନତାର ସଂଗ୍ରାମରେ ବିଜୟ ଶେଷକ ଅଟେ ।

ବିଶ୍ୱନାଥ ବାବୁଙ୍କ ସରଳତା, ନିଷ୍ଠା, ଦାୟିତ୍ୱସମ୍ପନ୍ନ ମୁରବୀପଣିଆ ମତେ ସବୁ ସମୟରେ ଆକୃଷ୍ଟ କରିଥାଏ । ସେ ଦମନ ସମୟରେ ଭାଙ୍ଗିପଡ଼ି ନାହାନ୍ତି କିମ୍ବା ବିଧାୟକ ହୋଇ ଟଙ୍କା ରୋଜଗାର କରିନାହାଁନ୍ତି । କମ୍ୟୁନିଷ୍ଟ ଆଦର୍ଶ ଓ ନୀତିବାନର ଝଲକ ତାଙ୍କ ନିକଟରେ ଝଟକୁ ଥିଲା । ତାଙ୍କ ପ୍ରେରଣାରେ ଦକ୍ଷିଣଓଡ଼ିଶାରେ ବହୁ କମ୍ୟୁନିଷ୍ଟ କର୍ମୀ ସୃଷ୍ଟି ହୋଇଛନ୍ତି । ଆଜି ଆମଦେଶ ଘୋର ସଙ୍କଟ ମଧ୍ୟଦେଇ ଗତି କରୁଛି । କେନ୍ଦ୍ରରେ ସାମ୍ପ୍ରଦାୟିକ ଫାଶିବାଦୀ ସରକାର କ୍ଷମତା ଦଖଲ ଦିନଠାରୁ ଗଣତନ୍ତ୍ର, ପ୍ରଗତି, ବିଚାର, ଦଳିତ, ଆଦିବାସୀଙ୍କ ଉପରେ ରାଷ୍ଟ୍ରହିଂସା ବଢ଼ି ଚାଲିଛି । ଜଙ୍ଗଲ, ଜମି, ଜଳ ପାଇଁ ଲଢୁଥିବା ବ୍ୟକ୍ତିଙ୍କୁ ମିଥ୍ୟା ଏନ୍‌କାଉ[ରେ ଗିରଫ, ଚାଷୀ ଆନ୍ଦୋଳନକୁ ଦମନ ଚାଲିଛି । ଅନ୍ୟପଟେ ରାଜ୍ୟରେ ନବୀନ ସରକାରଙ୍କ କମ୍ପାନୀ ପ୍ରୀତି ଓ ରାଜକୋଷ ଲୁଣ୍ଠନ ଚାଲିଛି । ସେ ସମୟରେ ଦକ୍ଷିଣ ଓଡ଼ିଶାରେ ଜଣେ ଲଢୁଆ ମୁରବୀଙ୍କ ଦେହାନ୍ତ ଜନ ଆନ୍ଦୋଳନ ପାଇଁ ଅପୂରଣୀୟ କ୍ଷତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସାଥୀ ବିଶ୍ୱନାଥ ବାବୁଙ୍କ ତ୍ୟାଗମୟ ଜୀବନରୁ ଆଜିର ଯୁବପିଢ଼ି ଶିକ୍ଷା ଗ୍ରହଣ କରିବା ଅତ୍ୟନ୍ତ ଆବଶ୍ୟକ ଅଟେ । ଶେଷରେ ମୁଁ ବିଶ୍ୱନାଥ ବାବୁଙ୍କୁ ଲାଲସଲାମ ଜଣାଉଛି ।



***ଆବାହକ, ଦମନପ୍ରତିରୋଧ ମଂଚ, ଓଡ଼ିଶା***

# A Tribute to my beloved *Ajaon*

***" Lives of great men all remind us. We can make our lives sublime and, departing leave behind us footprints on the sands of time" _ William Wordsworth***

The above quotation fits well into the personality of my / our beloved and revered Ajja ( Shri Biswanath Sahu, the veteran Communist Leader who was an embodiment of selflessness, steadfast, honest and at the same time a ferocious crusader of oppressed classes. A Leader in true sense of the term.

I (we) always feel proud to be their grandsons / grand daughters. Let me recall some of my childhood memories that I shared with him. As a kid, I was always little afraid of him and I had always seen him as a strict disciplinarian and most active among all elderly people more akin to that of a military officer. An early riser, he would finish his morning chores by 6.00 am. I often felt awkward when my Ajja would ask for hot /lukewarm water to drink even in intense May summer; on my asking the reason, he would say that it is good for one's health. Perhaps, he was true as he lived for a long 91 years. As said by Gandhiji he believed that Cleanliness is Holiness. A voracious reader, he would spend a lot of time while at home by going through a lot of magazines, journals, periodicals. I have also seen him writing a lot to his party men, to district / State level officers on various grievances of people. I have seen him engaging himself hours together with the visitors, union leaders, farmers and other unprivileged people in his small but bustling drawing room ( *dandaghara*) with unsophisticated chairs and benches on various party issues / programmes and problems of poor and downtrodden people. During such hours, he would not tolerate our disturbances in any form. Off and on, he would give orders to my *Aai(* Grand mother*)* for making light tiffins/ snacks/ tea for the visitors which the latter would carry out most obediently.

Whenever he stayed at Bhubaneswar ( in his party office ), he would visit our quarters just to see us and would hardly

agree to stay even for a night in spite of our repeated requests ( though during his last days, he had to stay for more than three months at our quarters for his medical treatment).

As I grew , I gradually discovered him intensely– his public and political life, his popularity among the people, his rapport with the people who matters and also his never tiring will power to do some thing for the society at large.

However, in spite of his rock-solid personality he had to undergone a lot of painful medical treatments – medicines, injections, saline, operations , ICUs, life-support systems etc. As if God was testing his endurance ; and at last he succumbed to all these failing treatments and left us for ever on 18th March 2016. I have seen his last days – he was still thinking of setting up a college at Chamakhandi, a multi-speciality hospital near his village with the help of Tatas, strengthening the younger leadership in his party ( CPI), and about so may of his unfinished works. Perhaps, he wanted to live more to complete his dream projects/ programmes. When, he realized that he could not fulfil his dreams , he started behaving strangely. He stopped eating, drinking ( even a cup of tea, his most favourite hot drink), and even taking medicine / injections etc. I feel that this withdrawal syndrome was his own decision as a protest to his somewhat earlier retirement from life.



When he was bed-ridden, people from all walks of life visited our quarter. To my mite, I also tried a lot to cheer him up by cracking jokes with him, reminding

him of his old good days in USSR, CPI office, his Chamakhandi High Schools, his busy –schedules for meetings / agitations etc. to make him nostalgic about his past.

Perhaps, all our efforts yielded some good results as hehe went to his native place to get well further. I still remember the day when he left for his village; that day I got my 8th std. final results. Then after some days, while every one was expecting his speedy recovery, on 18th March at 9.30 PM we received the shocking news of his defeat to life. Hundreds of people from all sections of the society gathered at his villages to have the last glance of their beloved leader, a man of so many virtues. Later on, his dead body was taken to Bhubaneswar CPI office after a procession at his village for enabling his party men to pay last homage to their great leader. I have seen that leaders from all political parties, union leaders, journalists and many eminent persons attended to bid their last farewell to my Aja. Standing at a corner, I just felt proud of being his grand child. At last he was taken to PuriSwargaDwara for last rites. On this 1st death anniversary, let me remember some of his near and dears who in his last days, gave their time and energy in taking care his ailing and falling physical conditions. Be it in attending to him during his long stays in KIIMS hospital, taking care at home after his discharge from hospital, spending many sleepless nights in attending to a number of unusual and unwanted situations in his caring during his last days. Prominent among them are his son ( my uncle), my mother, my father, my grand mother (aai), my main and above all his son-like SankarMamu.

At the end, we pray Almighty to keep his soul in the heavenly abode in a very high position(that he deserves) so that he can bestow his blessings upon us. *Aja*, we are all proud of you and on this auspicious day, we promise that we would try our best to follow all the good things about you as far as possible.

Lovingly yours,

***Sudhanshu( Lipun), Sushree ( Lucy),***
***Mama, Baba, Mausi,***
***Baunty, Bapu, Lira etc.***



# My Grandfather

18 March 2016 was the worst day of my life. At 11:20pm my grandfather passed away that day, On 19th we were going to shift him to a hospital, I wasn't told about this incident before 5am that day( 18th March).

His illness started from July-August 2015 .I had never thought such a disease would complete a person having a healthy life-style . He was always fit earlier. His first operation took Place on 28/8/2015 ,It was almost unsuccessful because he wasn't recovered, Berhampur medical failed to cure my grandfather. Second operation was at Bhubaneswar. But the disease had already took such a turn that it was very hard to recovery from the disease, Three months before he started to take only liquid food. His nutrition became very low and led him to the death.



Seriously, till today I don't know the name of thd disease.

My grandfather was my best ever friend . He had never scolded me for any thing nor restricted me for anything. He loved his party vey much, Beloved Grandfather

Granddaughter
LIRA ( Sanjana)



# ମାନବବାଦୀ ସ୍ୱର୍ଗତ ବିଶ୍ୱନାଥ ସାହୁ

ରବି ପାଣିଗ୍ରାହୀ

ବିଶିଷ୍ଟ ମାନବବାଦୀ ନେତା ବିଶ୍ୱନାଥ ସାହୁଙ୍କ ତିରୋଧାନର ନିକଟରେ ଏକବର୍ଷ ପୂରିବାକୁ ଯାଉଛି। ଗଠିତ ସ୍ମୃତି କମିଟି ତରଫରୁ ତାଙ୍କ ବାର୍ଷିକୀ ପାଳନ ଓ ଗୋଟିଏ ସ୍ମରଣିକା ଉନ୍ମୋଚନର ପ୍ରସ୍ତୁତି ଚାଲିଛି। ତାଙ୍କ ସମ୍ପର୍କରେ ଦୁଇପଦ ଲେଖିବାପାଇଁ ଇଚ୍ଛାକରି ସର୍ବପ୍ରଥମେ ମୁଁ ଏହି ଦିବଙ୍ଗତ ନେତାଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି। ବିଶ୍ୱନାଥ ବାବୁଙ୍କ ସହ ପରିଚୟ ସେପରି କିଛି ଖାସ୍ ଟିପ୍ପଣୀଯୋଗ୍ୟ ନୁହେଁ ବରଂ ବ୍ରହ୍ମପୁରରେ ଥାଇ ତାଙ୍କୁ ଜାଣିବା ମୋ ପାଇଁ ସ୍ୱାଭାବିକ ଥିଲା। ଏହି ଶାନ୍ତ, ସରଳ ଓ ଅମାୟିକ ବ୍ୟକ୍ତିତ୍ୱ ସମସ୍ତଙ୍କ ମନପସନ୍ଦର ଥିଲେ। ହୋ-ହାଲ୍ଲା ହସଖୁସିର ଚାଲିଚଳଣ ପଛରେ ସ୍ପଷ୍ଟବାଦିତା ଓ ରୋକଠୋକ କହିବାର ଅଭ୍ୟାସ ସ୍ପଷ୍ଟ ବାରି ହେଉଥିଲା। ଏପରି ଦେଖିଲେ ଜଣେ ସାଧାରଣ ମଣିଷ, କିନ୍ତୁ ପ୍ରତିଭାର ଅଧିକାରୀ। ଜଣେ ସମର୍ପିତ ଓ ମେହନତୀ କମ୍ୟୁନିଷ୍ଟ ହିସାବରେ ସେ ଥିଲେ ସାରା ରାଜ୍ୟ ଓ ରାଜ୍ୟ ବାହାରେ ପରିଚିତ। ତାଙ୍କ ଅନ୍ତେ ଓଡ଼ିଶା କୃଷକ ଆନ୍ଦୋଳନ ଜଣେ ମହାରଥୀଙ୍କୁ ହରାଇଛି। ଜଣେ ଲୋକ ପ୍ରତିନିଧି ହିସାବରେ ତାଙ୍କର ଅବଦାନ ଅବିସ୍ମରଣୀୟ। ୧୯୭୭ ମସିହାରେ ସେ ଛତ୍ରପୁର ବିଧାୟକ ହିସାବରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ। ମୁସ୍ତାଦାରୀ, ଜମିଦାରୀ ବ୍ୟବସ୍ଥା ଓ ଶୋଷଣ ବିରୋଧରେ ସଂଗ୍ରାମ ପାଇଁ ସେ ବହୁ ପରିଚିତ। ଓଡ଼ିଶା ଭୂ-ସଂସ୍କାର ଆଇନକୁ ବିଧାନସଭାରେ ସ୍ୱୀକୃତି ପାଇଁ ତାଙ୍କ ସଂଗ୍ରାମ ଭୁଲିବାର ନାହିଁ। ଗରିବ ଖଟିଖିଆଙ୍କ ପାଇଁ ବିଶ୍ୱନାଥଙ୍କ ଜୀବନ ସମର୍ପିତ ଥିଲା। ସମସ୍ତେ ଶିକ୍ଷିତ ହେବେ, ଆଇନ ସମ୍ବନ୍ଧରେ ସମସ୍ତେ ସଚେତନ ହେବେ, ଏଥିପାଇଁ ସେ ଅହରହ ସଂଗ୍ରାମ କରିଥିଲେ। ମୋର ଜ୍ଞାତସାରରେ ନିଜ ଅଂଚଳ ଚମାଖଣ୍ଡି, ଗଂଜାମର ଭୀଷ୍ମଗିରି ଓ ପୁରୀ ଜିଲ୍ଲାରେ ମଧ ସେ ହାଇସ୍କୁଲମାନ ପ୍ରତିଷ୍ଠା କରିଥିଲେ।



ସ୍ୱାଧୀନଚେତା ଓକିଲମାନଙ୍କ ପ୍ରତି ବିଶ୍ୱନାଥ ବାବୁଙ୍କ ଦରଦେ ସଦ୍ଭୁବେଳେ ସୂଚନାଯୋଗ୍ୟ ସେ କୁହନ୍ତି, ମୁଁ ଓକିଲ ନୁହେଁ, କିନ୍ତୁ ଯୁବଓକିଲଙ୍କ ସଂଘର୍ଷ ସହିତ ମୁଁ ପରିଚିତ।' ଏଥିପାଇଁ ୧୯୮୧ ମସିହାରେ ଏଡ଼ଭୋକେଟ ୱେଲଫର ବିଲ୍‌କୁ ଓଡ଼ିଶା ବିଧାନସଭାରେ ସ୍ୱୀକୃତିଦେବାପାଇଁ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ।

ମେଳାପୀ ବିଶ୍ୱନାଥ ସାହୁ ବାବୁ ବାଟରେ ଘାଟରେ ଦେଖିଲେ ଭଲ ମନ୍ଦ ପଚାରିବାପାଇଁ ଭୁଲନ୍ତି ନାହିଁ। କର୍ମଯୋଗରେ ବିଶ୍ୱସ ରଖିଥିବା ଏହି ବ୍ୟକ୍ତିତ୍ୱ ଚିର ସ୍ମରଣୀୟ। ମୋର ମନେ ଅଛି ଥରେ ମୁଁ ଘର ଆଗରେ ଠିଆ ହୋଇ ମାଇକରେ ଶୁଭୁଥିବା ଜଣେ ସନ୍ୟାସୀଙ୍କ ପ୍ରବଚନ ଶୁଣୁଥିଲି। ଏତିକିବେଳେ ବିଶ୍ୱନାଥ ସାହୁ ବାବୁ ଆମଘର ଦେଇ ପୁରୁଣା ବସଷ୍ଟାଣ୍ଡକୁ ଯାଉଥିଲେ। ମୋତେ ଦେଖି ପଚାରିଲେ, କଣ ହୋ' ପାଣିଗ୍ରାହୀ -ପ୍ରବଚନ ଶୁଣୁଛ ! କେବେ ମରିବା ବୋଲି ଏବେଠାରୁ ଗିନି ବଜାଇବା କି ହୋ। ଯାଅ ଯାଅ। ଲୋକଙ୍କର ସେବା କର। ଭଲ କାମ କର, ପ୍ରବଚନରୁ କ'ଣ ମିଳିବ ? ତାଙ୍କର ଏହି ଉକ୍ତିକୁ ମୁଁ ବହୁ ଲୋକଙ୍କୁ କହିଛି। ଆଜି ତାଙ୍କ ପୁଣ୍ୟତିଥିରେ ମୁଁ ଏହି ଅମର ଆତ୍ମା ପ୍ରତି ପୁଣିଥରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି।

*ଅଧିବକ୍ତା, ବ୍ରହ୍ମପୁର*



# ଶ୍ରଦ୍ଧାଞ୍ଜଳି- ଭିନ୍ନ ଏକ ଜନନାୟକଙ୍କୁ

ଶଶାଙ୍କ ଶେଖର ପାଣିଗ୍ରାହୀ

ତୁମେ ଥିଲ ଏକ ବ୍ୟତିକ୍ରମ। ଏକ ଭିନ୍ନ, ଅନନ୍ୟ ପୁରୁଷ। ତୁମର ପ୍ରିୟ ସ୍ଥାନ କୌଣସି ପର୍ଯ୍ୟଟନସ୍ଥଳୀ କିମ୍ବା ସୌନ୍ଦର୍ଯ୍ୟଭରା ସହର ନଥିଲା। ଥିଲା ସଭା ସମିତି, ଭଗବତୀ ଭବନ, ସିପିଆଇ ରାଜ୍ୟ ତଥା ଜାତୀୟ ସ୍ତରର ଅଫିସ୍, ତୁମର ପ୍ରିୟ କାର୍ଯ୍ୟ, ନିରକ୍ଷର, ଅସହାୟ ଲୋକଙ୍କ ସମସ୍ୟାକୁ ସରକାରୀ ବାବୁମାନଙ୍କ ଠାରେ ଉପସସ୍ଥାପନ କରିବା, କୃଷି ଓ କୃଷକର ସମସସ୍ୟାଗୁଡ଼ିକୁ ସର୍ବସାଧାରଣ ଓ ସରକାରଙ୍କ ପାଖରେ ପହଂଚାଇବା, ଶିକ୍ଷାର ପ୍ରଚାର ଓ ପ୍ରସାର କରିବା, ବିଦ୍ୟାଳୟ ସ୍ଥାପନ କରିବା, ତୁମର ପ୍ରିୟଜନ- କମ୍ୟୁନିଷ୍ଟ ପାର୍ଟିର କର୍ମକର୍ତ୍ତା ଓ ସେହି ସିଦ୍ଧାନ୍ତରେ ବିଶ୍ୱାସ କରୁଥିବା ପ୍ରତ୍ୟେକ ମଣିଷ, ତୁମର ସବୁଠୁ ବଡ଼ ଲକ୍ଷ୍ୟ ଥିଲା- ରାଜ୍ୟରେ କମ୍ୟୁନିଷ୍ଟ ଶାସନ, ସାମ୍ୟବାଦର ପ୍ରତିଷ୍ଠା।

ତୁମର ପ୍ରିୟ ଯାନ ଥିଲା, ପଦଯାତ୍ରା, ପ୍ରିୟ ପୁରୁଷ- ତୁମ ସମସାମୟିକ ସହକର୍ମୀ ତଥା କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ, ଜାତୀୟ ଓ ଆନ୍ତର୍ଜାତୀୟ ନେତୃବୃନ୍ଦ ଯଥା ଲେନିନ, ଫିଡେଲ କାଷ୍ଟ୍ରୋ, ନମ୍ବୁଦ୍ରୀପଦ, ଏବି ବର୍ଦ୍ଧନ, ସଦାନନ୍ଦ ମହାନ୍ତି, ଗୁରୁଚରଣ ପଟ୍ଟନାୟକ, ଲୋକନାଥ ଚୌଧୁରୀ, ସୁଧାକର ରେଡ଼ି ପ୍ରମୁଖ।

ଆଉ ଏତେ ସବୁ ପ୍ରିୟ ବସ୍ତୁ ଭିତରେ ପ୍ରିୟ କିଛି ନଥିଲା- ଧନସମ୍ପତି, କ୍ଷମତା ଓ ପ୍ରତିଷ୍ଠା ( Name-Fame and Fortune)

ଦୀର୍ଘ ସାତ ଦଶନ୍ଧିର ଜନଜୀବନରେ ଅଗଣିତ ଜନଆନ୍ଦୋଳନ, ଗଣଧାରଣା, ଅନଶନ, ଘେରାଉ, ପ୍ରତିବାଦ ସଭା, ସବୁ ସେହି ଦୁର୍ନୀତି, ଅନୀତି, କୁଶାସନ ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ଉତ୍ସର୍ଗୀକୃତ। ଲକ୍ଷ୍ୟଥିଲା ସାଧାରଣ ଖଟିଖିଆ, ଚାଷୀ, ମୂଲିଆ ତଥା ନିଃସ୍ୱ ଲୋକଙ୍କର ଦୁଃଖ, ଦୁର୍ଦ୍ଦଶା,ଅଭାବ ଓ ଅସୁବିଧାକୁ ସରକାରଙ୍କ ନିକଟରେ ଉପସ୍ଥାପନ କରିବା ଓ ନ୍ୟାଯ୍ୟ ଦାବୀ ପାଇଁ ଲଢେଇ କରିବା। ସେଇ ଲକ୍ଷ୍ୟ ନେଇ ତୁମେ ଉଚ୍ଚ ଦରମାଯୁକ୍ତ ସରକାରୀ ହାକିମ ବଦଳରେ ହୋଇଗଲ ଜଣେ ଜନନେତା, ବେସାଲିସ ଭାବେ ଭାବେ କମ୍ୟୁନିଷ୍ଟ ଚିନ୍ତାଧାରାରେ ନିଜକୁ ବ୍ରତୀ କରାଇ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ରହିଗଲ  ଜଣେ ସଚ୍ଚା ସାମ୍ୟବାଦୀ ନେତା ହୋଇ। ତୁମକୁ କେବେ ବି କ୍ଷମତା ରାଜନୀତି (Power Politics)ର ମୋହ ଆକର୍ଷଣ କରିନଥିଲା। କ୍ଷମତା ରାଜସିକ ଲୋଭୀ ହୋଇଥିଲେ ହୁଏତ କେଉଁ ଏକ କ୍ଷମତାକେନ୍ଦ୍ରୀକ ରାଜନୈତିକ ଦଳରେ ସାମିଲ ହୋଇ ମନ୍ତ୍ରୀପଦ ପାଇପାରିଥାନ୍ତ। ତୁମର ସେହି ଅପରିଗ୍ରହୀତା ତୁମକୁ ସମସ୍ତଙ୍କ ସମ୍ମୁଖରେ ଏକ ଆଦର୍ଶ ପୁରୁଷଭାବେ ପରିଚୟ ଦେଇପାରିଛି। ତୁମର ସରଳ  ଜୀପନଯାପନ, ଉଚ୍ଚ ଚିନ୍ତାଧାରା, ନିଷ୍କପଟତା, କ୍ଷମାଶୀଳ ଗୁଣଗୁଡ଼ିକ ଆମ ସମସ୍ତଙ୍କ ପାଇଁ ମାର୍ଗଦର୍ଶିକା ହୋଇରହିବ। ଏକ କର୍ମଚଂଚଳ, ଆଳସ୍ୟହୀନ, ହାସ୍ୟଭରା ଚାହାଣୀ ଓ ନିଃସ୍ୱାର୍ଥପର ଜୀବନ- ଶୈଳୀର ଏକ ଅପୂର୍ବ ସମାହାର ଥିଲ ତୁମେ। ବୋଧହୁଏ ଏତେଗୁଡ଼ିଏ ମହତ୍ ତଥା ଦିବ୍ୟଗୁଣର ଅଧିକାରୀ ହୋଇଥିବାରୁ କେଉଁ ଏକ ଦେବତା ( ଇନ୍ଦ୍ରଦେବ)ଙ୍କ ଈର୍ଷାର ଶିକାର ହୋଇଗଲ ତୁମେ। ଆଉ ତୁମର ସେହି ଚଳଚଂଚଳ ଜୀବନରେ ଘୋଟିଗଲା କଳାବାଦଲର ଛାଇ। ହଠାତ୍ ତୁମର ଶରୀର ଓ ମନ ଶକ୍ତିହୀନ ହୋଇପଡ଼ିଲା। ସମସ୍ତ ଚେଷ୍ଟାସତ୍ତ୍ୱେ ତୁମେ ଆରପାରିକୁ ଚାଲିଗଲ। ସମସ୍ତଙ୍କୁ ଛାଡ଼ି ତୁମର କିଛି ଅଧୁରା ସ୍ୱପ୍ନକୁ ଛାଡ଼ି, କେଉଁ ଅନ୍ୟ ଏକ ଜଗତକୁ ଯାହାକୁ ସିଦ୍ଧପୁରୁଷମାନେ 'ସ୍ୱର୍ଗ' ବୋଲି କହନ୍ତି, ଯେଉଁଠାରେ ଦେବତାମାନେ ବାସ କରିଥାନ୍ତି।

ଆମଭଳି ସାଧାରଣ ଲୋକ ନିଜର ଆସନ୍ନ ମୃତ୍ୟୁ ଜାଣିବାରେ ନିଜର ପୁଅଝିଅ, ଧନସମ୍ପତି, ଜମିବାଡ଼ି, ବଣିଜ ବେପାର ଇତ୍ୟାଦି ବିଷୟରେ ବାରମ୍ବାର ପଚାରିଥାନ୍ତି। କିନ୍ତୁ କେବଳ ତୁମଠାରେ ଏହାର ବ୍ୟତିକ୍ରମ ଦେଖାଦେଇଥିଲା। ତୁମେ ପଚାରୁଥିଲ, ପାର୍ଟି ବିଷୟରେ, ଚମାଖଣ୍ଡି ହାଇସ୍କୁଲକୁ କଲେଜରେ ପରିଣତ କରିବା, ଗାଁ ନିକଟରେ ଏକ ହସପିଟାଲ ପ୍ରତିଷ୍ଠା କରିବା ଏପରି କେତେ କ'ଣ !!

ତୁମର ଅବର୍ତମାନରେ ଆଜି ନିରବତା, ନିଃସ୍ୱତା ସବୁଠି ଅନୁଭୂତ ତୁମ ଦୀର୍ଘ ୭୦ବର୍ଷର ଜନଜୀବନରେ ଅଗଣିତ ଜନଯାତ୍ରା। ସଭାସମିତି ରାଜନୈତିକ ମଂଚ, ତୁମ ପ୍ରଚେଷ୍ଟାରେ ଗଢ଼ି ଉଠିଥିବା ଅନେକ ବିଦ୍ୟାଳୟ, ସିପିଆଇର ପାର୍ଟି ଅଫିସଗୁଡ଼ିକ, କର୍ମକର୍ତା ଓ ସହକର୍ମୀମାନେ, ମାଷ୍ଟର କ୍ୟାଂଟିନ ଠାରୁ ପିଏମ୍‌ଜି ଛକ ରାଜରାସ୍ତା, ଓଡ଼ିଶାର ଶହଶହ ଗ୍ରାମ, ବନ ଉପବନ, ଜନପଦ, ମାଇଲବ୍ୟାପି, ପାଦଚଲା ରାସ୍ତା, ପାନ୍ଥଶାଳା ଇତ୍ୟାଦି। ( ଯେଉଁଠାରେ ତୁମେ ବିତାଇଥିଲ, ଅନେକ ସମୟ - ନିଜପାଇଁ ନୁହଁ, ସଂଗ୍ରାମ କରିବା ପାଇଁ, ଜନଆନ୍ଦୋଳନ ପାଇଁ, ଜନସଚେତନତା ପାଇଁ) ସେକେଟେରିଏଟ୍‌ର କ୍ଷମତା ଅଳିନ୍ଦମାନ ( ଯେଉଁଠିକୁ ତୁମେ ସହସ୍ରବାର ଯାଉଥିଲ-ଅନ୍ୟର ସମସ୍ୟାର ସମାଧାନ ପାଇଁ) ଏହିପରି ଅନେକ ସ୍ଥାନ ( ରାଜ୍ୟ ତଥା ରାଜ୍ୟ ବାହାରର) ନିଜର ପ୍ରିୟ ସନ୍ତାନକୁ ହରାଇ ଝୁରୁଥିବେ ନିଶ୍ଚୟ।



ଆଜି ସ୍ମୃତିଚାରଣ କଲାବେଳେ ମୋର ଦୀର୍ଘ ୨୦ବର୍ଷର ଶ୍ୱଶୁର- ଜାମାତା ସମ୍ପର୍କ ମଧ୍ୟରେ ଅନେକ କଥା ମନେପଡେ଼। ତୁମର ମୋ ପ୍ରତି ଥିବା ଅନାବିଳ ସ୍ନେହର ପରଶ, ମୁଁ ଅନେକଥର ଅନୁଭବ କରିଛି। ମୁଁ କୁଶସ୍ଥଳୀ ଯିବାର ଖବର ତୁମକୁ ସର୍ବଦା ଏକ ଅପୂର୍ବ ଆନନ୍ଦରେ ଭରିଦିଏ ଏବଂ ତୁମର ବ୍ୟସ୍ତବହୁଳ କାର୍ଯ୍ୟସୂଚୀକୁ ମୋ ପାଇଁ ଟିକିଏ ସମୟଦେବାକୁ କେବେ ବି ଭୁଲିନାହଁ। ଆଜି ବି ମୋର ମନେପଡ଼େ, ତୁମେ କହିଥିବା ତୁମର ଦୀର୍ଘ ୭୦ବର୍ଷର ସାମାଜିକ, ରାଜନୈତିକ ତଥା ଜନଆନ୍ଦୋଳନର ଅନେକ ଅନେକ ମର୍ମସ୍ପର୍ଶୀ ଓ ଉପାଦେୟ ତଥ୍ୟ ତୁମର କର୍ମଚଂଚଳ ଜୀବନ ସତରେ ଆମ ସମସ୍ତଙ୍କ ପାଇଁ ଏକ ଆହ୍ୱାନ ହୋଇ ରହିବ।

ଚୈତ୍ରମାସର ଖରା, ଶ୍ରାବଣର ବର୍ଷା ଓ ମାର୍ଗଶିର ମାସର କାକର କେବେ ବି ତୁମର ଦିନଚର୍ଯ୍ୟା ତଥା କାର୍ଯ୍ୟସୂଚୀକୁ ପ୍ରଭାବିତ କରିପାରି ନାହିଁ। ବେଳବେଳେ ମୋର ବାରଣସତ୍ୱେ ତୁମେ ଚାଲିଯାଅ, ତୁମର କର୍ମଭୂମିକୁ। ତୁମରି ଅଦମ୍ୟ ଇଚ୍ଛାଶକ୍ତିକୁ ପୁଞ୍ଜିକରି ଜୀବନର ଶେଷ ଦିନଗୁଡ଼ିକରେ ତୁମର ମୃତ୍ୟୁ ଆଗରେ ହାରିଯାଉଥିବା ମୁହୂର୍ତଗୁଡ଼ିକ ଏବେ ବି ମୋର ମନେ ପଡ଼ିଯାଏ। ଈଶ୍ୱରଙ୍କ ନିକଟରେ ମୁଁ ପ୍ରତିବାଦ କରେ, ଆଉ କିଛିବର୍ଷ ଇହଧାମରେ ରହିଥିଲେ କାହାର କ'ଣ ଯାଉଥିଲା ?

ହେ ମହାନ ଆତ୍ମା, ତୁମକୁ ଶତ ନମସ୍କାର ଜଣାଇ, ତୁମର ଜାମାତା ହେବାର ସୌଭାଗ୍ୟକୁ ମୋର କେଉଁ ଏକ ଜନ୍ମର ପୁଣ୍ୟକର୍ମର ଫଳଭାବେ ମନେ କରି ମୋର ଏଇ ଛୋଟ କଥାଟିଏ ଶେଷ କରୁଛି। ଆଜିର ଶ୍ରାଦ୍ଧ ଦିବସରେ ତୁମର ଆଶୀର୍ବାଦ ଭିକ୍ଷାକରି।

*ତୁମର ବଡ଼ଜାମାତା ଶଶାଙ୍କ ଶେଖର* 

# ମୋର ଚିରନମସ୍ୟ ନନାଙ୍କୁ ଚିଠି

ନନା,

ସ୍ୱର୍ଗପୁରୀର କେଉଁ ଏକ ଆସନରେ ବସି ଆମକୁ ତୁମେ ଦେଖୁଥିବ ନିଶ୍ଚେ। ତୁମର ଝିଅ ହୋଇ ଜନ୍ମ ନେଇଥିବା ଭାଗ୍ୟ ମୋ ପାଇଁ ଏକ ପରମ ଆନନ୍ଦ ହୋଇରହିବ। ତୁମଠାରୁ ପାଇଥିବା ଅନେକଗୁଡ଼ିଏ ସୁଗୁଣକୁ ପାଥେୟ କରି ମୋର ଜୀବନଯାତ୍ରାକୁ କୁସୁମିତ କରିପାରିଛି। ଜୀବନଶୈଳୀ, ସ୍ପଷ୍ଟବାଦିତା ଆମ ସମସ୍ତଙ୍କ ପାଇଁ ପ୍ରେରଣା ହୋଇରହିବ। ଏକ ବର୍ଷ ବିତିଗଲା, ତୁମେ ଆମକୁ ଛାଡ଼ି ଚାଲିଗଲ ସବୁଦିନ ପାଇଁ କେଉଁ ଏକ ଉତମପୁରୁଷ ରୂପେ ଜନ୍ମନେବାକୁ - ପୁଣି ଅନ୍ୟମାନଙ୍କ ପାଇଁ ଦୃଷ୍ଟାନ୍ତ ହୋଇ ରହିଯିବା ପାଇଁ। ମୁଁ ପୁଣି କେଉଁ ଏକ ଜନ୍ମରେ ତୁମର ଝିଅହୋଇ ରହିବାକୁ ଭଗବାନଙ୍କଠାରେ ଇଚ୍ଛାପ୍ରକଟ କରୁଛି।



ପିଲାଦିନୁ କେବେ ବି ତୁମକୁ ଆମଉପରେ ତୁମର ପିତୃତ୍ୱ ତଥା ବ୍ୟକ୍ତିତ୍ୱକୁ ଜାହିର କରିବାର ନଜିର ମୁଁ ଅନୁଭବ କରିନାହିଁ। ସର୍ବଦା ସମସ୍ତଙ୍କ ପାଇଁ ଚିନ୍ତା କରିବା ଓ ବ୍ୟସ୍ତ ରହିବା, ଅନ୍ୟମାନଙ୍କଠାରୁ ଅଜସ୍ର ସ୍ନେହଶ୍ରଦ୍ଧା ସମ୍ମାନ ପାଇବା ମୁଁ ଦେଖିଛି ଓ ସେଥିପାଇଁ ଗର୍ବ ଅନୁଭବ କରିଛି। ତୁମେ କେବେ ବି କାହାଠାରୁ କିଛି ଆଶା କରିନଥିଲ। ଭୁବନେଶ୍ୱରରେ ମୋ ଘରକୁ ଯେତେବେଳେ ଆସ; ତୁମ ବଡ଼ କ୍ୱାଇଁ, ନାତି ଓ ନାତୁରି ଏକ ଅପାର ଆନନ୍ଦ ପାଆନ୍ତି ଓ ତୁମର ସେହି ଆବେଗଭରା ଆଶୀର୍ବାଦ ତଥା ସ୍ନେହ ଆମ ସମସ୍ତଙ୍କ ପାଇଁ ଏକ ଆଜି ସବୁକିଛି ନିରବ ହୋଇଗଲେ ବି ଉପରେ ଥାଇ ଆମେ ଆମେ ସେହି ଆଶୀର୍ବାଦ ତୁମଠୁ ପାଇବାର ଅନୁଭବ କରୁଛୁ।

ତୁମର ଅବର୍ତମାନ ଆମକୁ ଏକ ଶୂନ୍ୟତା ଭିତରେ ପୂର୍ଣ୍ଣତାକୁ ଖୋଜିବାକୁ ପ୍ରେରଣା ଦେଉଛି। ଜୀବନର ଶେଷଦିନ ମାନଙ୍କରେ ତୁମର ସେହି ଶଯ୍ୟାଶାୟୀ ଅବସ୍ଥାରେ। ଯମଦୂତ ଭଳି ଆସିଥିବା ସେହି ରୋଗଗୁଡ଼ିକୁ ପରାହତ କରିବାର ଆପ୍ରାଣ ଉଦ୍ୟମରେ ସମସ୍ତଙ୍କ ସହ ମୁଁ ବି ସାମିଲ ହୋଇଥିବାରୁ , ଆଜି ମୁଁ ନିଜକୁ ଆଶ୍ୱାସନା ଦେଇପାରୁଛି ଯେ ଜଣେ କେବେ କିଛି ନମାଗିଥିବା ବ୍ୟକ୍ତିକୁ ମୁଁ ମୋର ପରମ କର୍ତବ୍ୟ ମାଧ୍ୟମରେ କିଛି ଦେଇପାରିଛି।

ନନା, ଆଜିର ଏହି ପବିତ୍ର ପ୍ରଥମ ଶ୍ରାଦ୍ଧ ଦିବସରେ ତୁମକୁ ଶତପ୍ରଣାମ ଜଣାଇ ତୁମର ଆଶୀର୍ବାଦ ଭିକ୍ଷା କରୁଛି। ଆମ ପରିବାର ଉପରେ ତୁମର ଦିବ୍ୟଦୃଷ୍ଟି ସର୍ବଦା ରହିଥାଉ।

ଇତି ତୁମ ବଡ଼ଝିଅ

ରାନା

✦

# ପୂର୍ବତନ ବିଧାୟକ ହରିହର ଦାଶଙ୍କ ଆତ୍ମଜୀବନୀ "ଗପ ନୁହେଁ"ରୁ ସଂଗୃହୀତ

୧୯୪୭ ମସିହାରେ ଓଡ଼ିଶା ବିଧାନସଭା ବୈଠକ କଟକ ରେଭେନ୍ସା କଲେଜରେ ହେଉଥାଏ। କମ୍ୟୁନିଷ୍ଟ ପାର୍ଟିର ଏକମାତ୍ର ପ୍ରତିନିଧି ବୈଦ୍ୟନାଥ ରଥ।

ଗୋବିନ୍ଦ ପ୍ରଧାନଙ୍କ ନେତୃତ୍ୱରେ ଆମେ ପ୍ରାୟ ୧୫୦ଜଣ କର୍ମୀ ଗଞ୍ଜାମ ଜିଲ୍ଲାର ପାଦରେ ଚାଲି ଚାଲି ଯାଉଥିଲୁ। ସରକାରଙ୍କୁ ଦାବୀପତ୍ର ଦେବା ଆମ ଉଦ୍ଦେଶ୍ୟ ଥିଲା। ଆସିକାରୁ ବେଗୁନିଆପଡ଼ା - ଅଙ୍ଗାର ଗାଁ ଦେଇ ଭାଲେରୀ ପାଦଦେଶରୁ ଏବଂ ବାଣପୁର -ଖୋର୍ଦ୍ଧା, ଚନ୍ଦକା ଦେଇ ନଦୀ ବାଟରେ କଟକରେ ପହଂଚିଲୁ। ଖୋର୍ଦ୍ଧାରେ ବିପୁଳ ଅଭ୍ୟର୍ଥନା ମିଳିଲା। ବାଟରେ ଚାଷୀମାନଙ୍କ ମଧ୍ୟରେ ଚହଳ ପଡ଼ିଗଲା। ଆମ ଆନ୍ଦୋଳନ ପ୍ରସାରିତ ହେଲା। ଖଲିକୋଟ ଆନନ୍ଦ ସ୍ୱାଇଁ ଏବଂ ଅନିରୁଦ୍ଧ ସ୍ୱାଇଁ ଆମ ସହ ଯୋଗଦେଲେ।

ବିଧାନସଭା ଆଗରେ ଆମ ଦାବୀ ଉପସ୍ଥାପିତ କଲୁ। ଜମିଦାରୀ ପ୍ରଥା ଉଠୁ, ମୁସ୍ତାଦାରୀ ଲୋପ ହେଉ, ଚାଷୀ ଜମିର ମାଲିକ ହେଉ, ଇନାମଦାରୀ ଯାଆନ୍ତୁ ନଗଦ ହିସ୍ସୁ ପଡ଼ୁ। ଲଙ୍ଗଳ ଯାର ଜମି ତା'ର ନୀତି କାର୍ଯ୍ୟକାରୀ ହେଉ ଏଥିରେ ଆମ ହକ୍। ଏପରି ଆନ୍ଦୋଳନର ଉପକାର ଆଜିର ସମାଜରେ କି ପ୍ରଭାବ ପକାଇଛି ବିଚାର କରିବାର କଥା।

ଗୋବିନ୍ଦ ପ୍ରଧାନ, ମୁଁ ଏବଂ ଶ୍ରୀ ବିଶ୍ୱନାଥ ସାହୁ ଏହି ପଦଯାତ୍ରାର ନେତୃତ୍ୱ ନେଇଥିଲୁ। ଶ୍ରୀ ବିଶ୍ୱନାଥ ସାହୁ ସେତେବେଳେ କଲେଜ ଛାତ୍ର। କୃଷକ ଆନ୍ଦୋଳନରେ ଆଗ୍ରହ ଥାଏ, ନରସିଂହ ପାତ୍ର ଆମ ସହ ଯାଇଥିଲେ। ସେ ଆଜି ନାହାନ୍ତି। ସେପରି ଉତ୍ସାହୀ କର୍ମୀସବୁ ଲୋପ ହେଲେଣି।

ଆମ ଲୋକ ସମ୍ପର୍କ ବଢ଼ିଲା ଏବଂ ସଙ୍ଗଠନ ପ୍ରସାରିତ ହେଲା। କଂଗ୍ରେସର ଆନ୍ଦୋଳନ ଆଭିମୁଖ୍ୟଠାରୁ ଏହି କାର୍ଯ୍ୟ ଭିନ୍ନ। ଏଠି ପ୍ରଜା ତ ନର ନାରାୟଣ, ସେହିମାନଙ୍କ ଭିତରେ ନିଜକୁ ହଜାଇ ନେବା ଅନୁଭୂତି ଅସରା। ଏଥିରୁ ମୁଁ ନିସ୍ତରିଲି ବୋଲି ଭାବି ପୁଲକିତ ହୋଇ ଉଠିଲି।

ଜୀବନର ରାଜରାସ୍ତାକୁ ଆସିଗଲି। ବହୁ ଅନୁଭୂତିର ସ୍ରୋତ ମିଶି ଗୋଟିଏ ଧାର ହୋଇ ସାଗରମୁଖୀ ହେଲା। ଆଉ ଲକ୍ଷ୍ୟଭ୍ରଷ୍ଟ ହେବାର ଅବକାଶ ନଥିଲା। କାରଣ ତାହା ଧ୍ରୁବତାରା ଭଳି ସ୍ଥିର ହୋଇଯାଇଥିଲା।

ସେ କାଳର ଓଡ଼ିଶାର ଚାଷୀର ଦୁଃଖପୂର୍ଣ୍ଣ ଜୀବନ ବୁଝାଇବା କଷ୍ଟକର। କେତେ ଅଭାବ ଭିତରେ ସେମାନେ ଜୀବନ କଟାଉଥିଲେ ଲେଖିବା କଷ୍ଟକର। ଏପରି ମଣିଷମାନଙ୍କୁ ଅନ୍ଧାରରୁ ଆଲୋକୁ ଆଣିବାର ଚେଷ୍ଟା କଂଟକିତ ହେବା ସ୍ୱାଭାବିକ। ତଥାପି ସେଇ କଂଟାର ବାଟରେ ମାଡ଼ି ଚାଲିଗଲୁ। ପାଦ କଷ୍ଟ ବାଧିଲାନି। କାରଣ ଦୂର ଚକ୍ରବାଳ ଉପରେ ସକାଳର କଅଁଳ ସୂର୍ଯ୍ୟ ଆମକୁ ଇସାରା ଦେଇ କହୁଥିଲେ-ଆସ-ନିଷ୍ପେସିତ ମୁହଁରେ ହସ ଆଣିଦେବା-ନୂଆ ଭାରତ ତିଆରି କରିବା-ଯେଉଁଠି ଅଶିକ୍ଷା, ଦୁଃଖ ଏବଂ ଶୋଷଣ, ଅନ୍ଧକାର ଭଳି ଉଭା ନ ହୋଇପିବ।

*(ପୂର୍ବତନ ଆସିକା ବିଧାୟକ ଓ କମ୍ୟୁନିଷ୍ଟ ନେତା ହରିହର ଦାଶଙ୍କ "ଗପ ନୁହେଁ" ଆତ୍ମଜୀବନୀ ୧୯୧ ରୁ ୧୯୩ ପୃଷ୍ଠାରେ ବର୍ଣ୍ଣିତ କିଂୟଦନ୍ତୀ)*



# ଆଖି ବୁଜିବା ପୂର୍ବରୁ ଯଦି ବାମପନ୍ଥୀ ଦଳମାନେ ଏକାଠି ହୋଇପାରନ୍ତି !

ବିଶ୍ୱନାଥ ସାହୁ

ମୋତେ ୮୮ବର୍ଷ ପୂରିଗଲାଣି। ଜନ୍ମ ୧୯୨୫ମସିହା ଜୁଲାଇ ମାସ ୧୨ତାରିଖରେ। ଏବେ ବି କାର୍ଯ୍ୟକ୍ଷମ ଅଛି। ଏକାଦିକ୍ରମେ ୨କି.ମି. ଚାଲିଯାଇପାରେ। ଜନ୍ମସ୍ଥାନ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ବ୍ରହ୍ମପୁର ତହସିଲର ବଡ଼କୁଶସ୍ଥଳୀ ଗ୍ରାମ। ପୁରୁଷୋତ୍ତମପୁର ନରସିଂହ ଦାଶ ହାଇସ୍କୁଲରେ ଛାତ୍ର ଥିବା ବେଳେ ଅଖିଳ ଭାରତ ଛାତ୍ରସଂଘ ପ୍ରତି ଆକୃଷ୍ଟ ହୁଏ। ମୋର ପ୍ରେରଣାଦାତା ହେଉଛନ୍ତି ସେତେବେଳକାର ଛାତ୍ରନେତା ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ନାତି ବିଶିଷ୍ଟ ଶିକ୍ଷାବିତ୍ ସତ୍ୟବାଦୀ ମିଶ୍ର।

୧୯୪୩ ମସିହା ଦୁର୍ଭିକ୍ଷରେ ଲୋକମାନେ ଭୋକରେ ଆଉଟୁପାଉଟୁ ହୋଇ ପୋକମାଛି ପରି ମରୁଥାନ୍ତି। ସେତେବେଳେ ଯୁଦ୍ଧ ସମୟ। ଆମେ ହଷ୍ଟେଲରେ ୮୦ଜଣ ପିଲା ଥାଉ। ସେହି ଦୁର୍ଭିକ୍ଷ ପ୍ରପୀଡ଼ିତ ପିଲା ଓ ଲୋକମାନଙ୍କୁ କିଛି କିଛି ଖାଦ୍ୟ ଦେଉ। ତାହା ଆମ ମନରେ ଭରି ଦେଇଥିଲା ସରକାରବିରୋଧୀ ବିପ୍ଲବର ଦାବାନଳ। ମୁଁ ଯୋଗଦେଲି ଅଖିଳଭାରତ ଛାତ୍ର ସଂଘ (ଏ.ଆଇ.ଏସ୍.ଏଫ୍.)ରେ। ବ୍ରହ୍ମପୁରଠାରେ ଜିଲ୍ଲା ଛାତ୍ର ସମ୍ମିଳନୀ ହେଲା। ସେଠାକୁ



ପୁରୁଷୋତ୍ତମପୁରରୁ ଚାଲିଚାଲି ଗଲୁ। ସେହି ସମ୍ମିଳନୀରେ ମୁଁ ନିର୍ବାଚିତ ହେଲି ଯୁଗ୍ମ ସମ୍ପାଦକ ଭାବରେ। ୧୯୪୬ରେ ଖଲ୍ଲିକୋଟ କଲେଜରେ ଛାତ୍ର ଥିବାବେଳେ 'ୟୁନିଅନ୍ ଜ୍ୟାକ୍' ପତାକାକୁ ଚିରି ଫୋପାଡ଼ି ଦେବା ଫଳରେ ପୁଲିସର ଲାଠି ପ୍ରହାରରେ ମୋର ମୁଣ୍ଡ ଫାଟିଗଲା।

ମୁଁ ଯୋଗଦେଲି ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ। କଲେଜରେ ପାର୍ଟିଶାଖା ଗଠନ କଲି। କମ୍ୟୁନିଷ୍ଟ ପାର୍ଟି ବେଆଇନ ଘୋଷଣା ହେଲା। ୧୯୪୯ରେ ଆରମ୍ଭ ହେଲା ମୋର ଜେଲ୍ ଯାତ୍ରା। ଦୀର୍ଘ ୩ବର୍ଷ ୪ମାସ ଜେଲଦଣ୍ଡ ସ୍ୱାଧୀନ ଭାରତରେ। ୧୯୫୨ରେ ପ୍ରଥମ ସାଧାରଣ ନିର୍ବାଚନ ହେଲା। ଆମେ ଜେଲରୁ ମୁକ୍ତ ହେଲୁ। ଗଞ୍ଜାମ ଜିଲ୍ଲାରେ କୃଷକମାନଙ୍କର ସ୍ଥିତି ଅତ୍ୟନ୍ତ ବିପନ୍ନ ଥିବା ଦେଖି ପାର୍ଟି ନିର୍ଦ୍ଦେଶରେ କୃଷକ ସଭାରେ କାର୍ଯ୍ୟ କଲି। ଭାଗଚାଷୀଙ୍କ ସଂଖ୍ୟା ପ୍ରତ୍ୟେକ ଗ୍ରାମରେ ପ୍ରାୟ ୮୦ରୁ ୯୦ ପ୍ରତିଶତ। ଭାଗଚାଷୀ ଆଇନ କାର୍ଯ୍ୟକାରୀ କରିବା ପାଇଁ ଆମେ ଶେରଗଡ଼ରୁ କଟକ ଆସେମ୍ବ୍ଲିକୁ ପଦଯାତ୍ରା କଲୁ। ମୋ' ସହିତ ୩୦୦ଲୋକ ଯାଇଥିଲେ ଏହି ପଦଯାତ୍ରାରେ। ଗୋପାଳପୁରରୁ ତାରାତାରିଣୀ ମଧ୍ୟରେ ପ୍ରାୟ ୧୦୦ଟି ଗ୍ରାମର ଭାଗଚାଷୀ ଯେଉଁମାନଙ୍କର ସଂଖ୍ୟା ହାରାହାରି ୪୦୦୦ ହେବ, ସେମାନେ ଏହାଦ୍ୱାରା ଉପକୃତ ହୋଇଥିଲେ। ଏହା ଥିଲା ମୋ' ନେତୃତ୍ୱରେ କମ୍ୟୁନିଷ୍ଟ ପାର୍ଟିର ଆନ୍ଦୋଳନ।

ଏହାପରେ ପ୍ରଥମେ ବଡ଼କୁଶସ୍ଥଳୀର ସରପଞ୍ଚ ହୋଇ ଏହାକୁ ରାଜ୍ୟର ଶ୍ରେଷ୍ଠ ପଞ୍ଚାୟତର ମାନ୍ୟତା ଆଣିଦେବାରେ ସକ୍ଷମ ହୋଇଥିଲି। ପରେ ଛତ୍ରପୁର ବିଧାୟକ ଭାବରେ ୧୯୭୭ରୁ ୧୯୮୧ ଓ ୧୯୮୧ରୁ ୧୯୮୫ ଦୁଇଥର ନିର୍ବାଚିତ ହୋଇଥିଲି। ସମୁଦାୟ ୧୧ଥର ବିଧାନସଭାର ନିର୍ବାଚନ ମଧ୍ୟରେ ୮ଥର ଭାରତୀୟ କମ୍ୟୁନିଷ୍ଟ ପାର୍ଟି (ସିପିଆଇ)ର ପ୍ରାର୍ଥୀ ନିର୍ବାଚିତ ହୋଇ ବିଧାୟକ ହୋଇଛନ୍ତି।



*ପାର୍ଥିବ ଶରୀର ନିକଟରେ ସିପିଆଇ ର ସାଧାରଣ ସମ୍ପାଦକ ଏସ୍. ସୁଧାକର ରେଡ୍ଡି, ସିପିଏମ୍‌ର ମହାସଚିବ ସୀତାରାମ ୟେଚୁରୀ, ସିପିଆଇ ରାଜ୍ୟ ସମ୍ପାଦକ ଦିବାକର ନାୟକ ଏବଂ ସିପିଏମ୍ ରାଜ୍ୟ ସମ୍ପାଦକ ଅଲିକିଶୋର ପଟ୍ଟନାୟକ*

ଏହା ସମ୍ଭବ ହୋଇଛି ଭାଗଚାଷୀ ଆନ୍ଦୋଳନ ଯୋଗୁଁ । ସମଗ୍ର ଗଞ୍ଜାମ ଜିଲ୍ଲା ହୋଇଯାଇଥିଲା କମ୍ୟୁନିଷ୍ଟମାନଙ୍କର ଗଡ଼ । ଭାଗଚାଷୀ ଆନ୍ଦୋଳନ, ଲୁଣଚାଷୀ ଆନ୍ଦୋଳନ, ବିଦ୍ୟୁତ ଆନ୍ଦୋଳନର ନେତୃତ୍ୱ ନେଇ କାର୍ଯ୍ୟ କରିଛି । ୧୯୬୯ ମସିହାରେ ବ୍ୟାଙ୍କ ଜାତୀୟକରଣ ଆନ୍ଦୋଳନରେ ସାମିଲ ହୋଇ ୯ଦିନ ଜେଲ୍ ଭୋଗିଛି ।

ବହୁବର୍ଷ (୨୪ବର୍ଷ) କମ୍ୟୁନିଷ୍ଟ ପାର୍ଟିର ଜିଲ୍ଲା ସମ୍ପାଦକ ଓ କିଷାନ ସଭାର ସମ୍ପାଦକଭାବେ କାର୍ଯ୍ୟ କରିଛି । କମ୍ୟୁନିଷ୍ଟ ପାର୍ଟିର ପ୍ରଥିତଯଶା ନେତା ବିଜୟ ଚନ୍ଦ୍ର ଦାସ, ପ୍ରାଣନାଥ ପଟ୍ଟନାୟକ, ସାଧୁଚରଣ ମହାନ୍ତି, ଅପନ୍ନା ପାତ୍ର, ଗଙ୍ଗାଧର ପାଇକରାୟ, ସଦାନନ୍ଦ ମହାନ୍ତି, ଲକ୍ଷ୍ମଣ ମହାପାତ୍ର, ହରିହର ଦାଶ, ଗୋବିନ୍ଦ ପ୍ରଧାନ, ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, ମୋହନ ଦାସ, ନିତ୍ୟାନନ୍ଦ ପାଣିଗ୍ରାହୀ, ଦୁର୍ଗାଚରଣ ମହାନ୍ତି, ଲୋକନାଥ ଚୌଧୁରୀ ପ୍ରମୁଖଙ୍କ ସହିତ କାର୍ଯ୍ୟ କରିବା ସହିତ ଅନେକ ଆନ୍ଦୋଳନରେ ଯୋଗ ଦେଇଛି ।

ମୋ ପ୍ରଚେଷ୍ଟା ଫଳରେ ଚମ୍ପାଖଣ୍ଡି ହାଇସ୍କୁଲ, ଆଳପୁର ହାଇସ୍କୁଲ, କରାପଲ୍ଲୀ ହାଇସ୍କୁଲ, ରମ୍ଭା ଗାର୍ଲସ୍ ସ୍କୁଲ ଇତ୍ୟାଦି ପ୍ରାୟ ୨୦ରୁ ଊର୍ଦ୍ଧ୍ୱ ହାଇସ୍କୁଲ ପ୍ରତିଷ୍ଠା ହୋଇଥିବାବେଳେ ପ୍ରାୟ ୨୦ଟି ମାଇନର ସ୍କୁଲ, ୨ଟି କଲେଜ, ହିନ୍ଦୀ ବିଦ୍ୟାଳୟ, ପୁରୁଷୋତ୍ତମପୁର, ବଡ଼କୁଶସ୍ଥଳୀଠାରେ ହାଇସ୍କୁଲ ଓ ସଂସ୍କୃତ ବିଦ୍ୟାଳୟ ସ୍ଥାପନ ହୋଇପାରିଛି, ଯାହାଫଳରେ ଭାଗଚାଷୀଙ୍କ ପିଲାମାନେ ଶିକ୍ଷାର ଆଲୋକରେ ଆଲୋକିତ ହୋଇପାରିଛନ୍ତି ।

ଭୂ-ସଂସ୍କାର ଆଇନକୁ ଆସେମ୍ବ୍ଲିରେ ଗୃହୀତ କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିଛି ଏବଂ ଦଳଗତ ଭିନ୍ନତା ସତ୍ତ୍ୱେ ସମଧର୍ମା ବିଧାୟକ ସତ୍ୟସୁନ୍ଦର ମିଶ୍ର, ନନ୍ଦିନୀ ଶତପଥୀ, ଚିନ୍ତାମଣି ପାଣିଗ୍ରାହୀ, ରମେଶ ପଣ୍ଡା, ରାମଚନ୍ଦ୍ର ମିଶ୍ରଙ୍କୁ ଏକତ୍ରିତ କରି ଗୋଟିଏ ଗୋଷ୍ଠୀ ସୃଷ୍ଟି କରିପାରିଥିଲି । ଜନସାଧାରଣଙ୍କର ଉନ୍ନତି ପାଇଁ କୌଣସି ନୀତିଗତ ପ୍ରଶ୍ନଉପରେ ଦଳମତ ନିର୍ବିଶେଷରେ ବିଧାୟକମାନେ ଏକାଠି ହେବା, ଏହା ତାହାର ପ୍ରକୃଷ୍ଟ ପ୍ରମାଣ । ମୋର ସମଗ୍ର ଜୀବନ କମ୍ୟୁନିଷ୍ଟ ପାର୍ଟି ପ୍ରତି ସମର୍ପିତ । ମୋ' ପିତାଙ୍କର ସନ୍ତାନ ଭାବରେ ଆମେ ଥିଲୁ ଚାରିଭାଇ ଓ ଦୁଇ ଭଉଣୀ । ମୋର ଦୁଇପୁଅ ଓ ଦୁଇ ଝିଅ । ସେମାନେ ପରିବାର ନେଇ ରହିଥିବାବେଳେ ମୋର କାର୍ଯ୍ୟ ନିଷ୍ପେଷିତ ଶ୍ରମିକ, କୃଷକ ଓ ଖଟିଖିଆ ମେହନତୀ ମଣିଷପାଇଁ ଅନବରତ ସଂଗ୍ରାମ । ଛାତ୍ର ଜୀବନରୁ ଅଦ୍ୟାବଧି ଏହା ହିଁ ମୋର ଏକମାତ୍ର କାର୍ଯ୍ୟ ଭାବରେ ରହିଆସିଛି ।

ବୃଦ୍ଧାବସ୍ଥା ଶରୀରକୁ ଆକ୍ରମିତ କରିସାରିଥିଲେ ସୁଦ୍ଧା ଏଯାବତ୍ ଜନଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରୁଛି, କାରଣ ମୁଁ ବିଶ୍ୱାସ କରେ ଯେ ଗଣଆନ୍ଦୋଳନ ମାଧ୍ୟମରେ ହିଁ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଲୋକମାନଙ୍କୁ ସୁବିଧା ଦିଆଯାଇ ପାରିବ । ସ୍ୱାଧୀନତା ପୂର୍ବରୁ ସ୍ୱାଧୀନତା ଆନ୍ଦୋଳନ ସହିତ ଗଡ଼ଜାତ ଅଞ୍ଚଳର କୃଷକ ଆନ୍ଦୋଳନରେ ସମ୍ପୃକ୍ତ ରହିବା ମୋ ପାଇଁ ଅବିସ୍ମରଣୀୟ । ଏହା ଯେଉଁ ବ୍ୟାପକରୂପ ଧାରଣ କରିଥିଲା, ତାହା ନଦେଖିବା ଲୋକେ ଶୁଣିଲେ ବିଶ୍ୱାସ କରିପାରିବେ ନାହିଁ । ବର୍ତ୍ତମାନ ଜଗତୀକରଣ ଅର୍ଥନୀତି ଫଳରେ ଦେଶରେ ଦାରିଦ୍ର୍ୟ ବୃଦ୍ଧି ପାଉଛି ଓ ଆର୍ଥିକ ଅସମାନତା ବଢ଼ୁଛି । କର୍ପୋରେଟ୍ ଲୁଟ୍ ବିରୁଦ୍ଧରେ ଯେପରି ଗଣଆନ୍ଦୋଳନ ହେବା କଥା, ତାହା ନହୋଇପାରୁଥିବରୁ ମୁଁ ଦୁଃଖିତ ଓ ମର୍ମାହତ ।

ଜୀବନରେ ପ୍ରାୟ ଯାହାକିଛି ସ୍ୱପ୍ନ ଦେଖିଥିଲି, ଉଣା ଅଧିକେ ସବୁ ପୂରଣ ହୋଇଛି । ତେବେ ଗୋଟିଏ ସ୍ୱପ୍ନ ଅଧା ରହିଯାଇଛି । ଆଖି ବୁଜିବା ପୂର୍ବରୁ ଯଦି ବାମପନ୍ଥୀ ଦଳମାନେ ଏକାଠି ହୋଇପାରନ୍ତି; ତାହା ହେବ ମୋ ଜୀବନର ସାର୍ଥକତା । କାରଣ ବାମପନ୍ଥୀ ଆଦର୍ଶ ବ୍ୟତୀତ ସମାଜର ପରିବର୍ତ୍ତନ ସମ୍ଭବ ନୁହେଁ ।

*(ସୌଜନ୍ୟ - ପ୍ରମେୟ, ୧୧ଅଗଷ୍ଟ ୨୦୧୩, ସଂକଳନ- ସୌରୀବନ୍ଧୁ କର)*







ଭାରତୀୟ କମ୍ୟୁନିଷ୍ଟ ପାର୍ଟି

80 CPI

ରାଜ୍ୟସ୍ତରୀୟ ୮୦ତମ ବାର୍ଷିକୀ ସମାରୋହ

# ମାନପତ୍ର

## କମ୍ରେଡ ବିଶ୍ୱନାଥ ସାହୁ

ହେ ସଂଗ୍ରାମୀ ସାଥୀ !

ସାମନ୍ତବାଦୀ ଓ ପୁଞ୍ଜିବାଦୀ ଶୋଷଣର ଚରାକୁଇଁ ପରାଧୀନ ଭାରତର ଓଡ଼ିଶା ମୂଲକରେ ଜନ୍ମ ଗ୍ରହଣ କରି, ଆପଣ ସୌଦାଗରୀ ସଭ୍ୟତାର ସୌଖିନ ଶୋଭାଯାତ୍ରାରେ ସାମିଲ ନ ହୋଇ, ଏଇମାଟିର ମଣିଷଙ୍କ ପାଇଁ ସେମାନଙ୍କ ପାଦତଳର ପୃଥିବୀରେ ଫୁଲ ଫୁଟାଇବା ନିମନ୍ତେ ବାଛି ନେଇଥିଲେ ଉତ୍ସର୍ଗୀକୃତ ବିପ୍ଳବୀର ଜୀବନ !

ଜୀବନର ଅଙ୍କା ବଙ୍କା ସେଇ କଙ୍କରିଳ ଓ କଣ୍ଟକିତ ରାସ୍ତାରେ ପାଦଚାଳି, ହାତରେ ମହାସତ୍ୟର ମାର୍କ୍ସବାଦୀ ମଶାଲଧରି ଶୋଷଣ ଓ ଅତ୍ୟାଚାରର ଅନ୍ଧାର ଭିତରେ ଶ୍ରେଣୀ ଶତ୍ରୁମାନଙ୍କର ଶକଟ ବ୍ୟୁହକୁ ଭେଦକରି ଆପଣ ବିରାମହୀନ ଭାବରେ ଚାଲିଛନ୍ତି ଆଗକୁ... ଆହୁରି ଆଗକୁ।

ଏହି ଦୁରନ୍ତ ଓ ଦୁର୍ଗମ ଯାତ୍ରାପଥରେ ଓଡ଼ିଶାରେ କମ୍ୟୁନିଷ୍ଟ ଓ କୃଷକ ଆନ୍ଦୋଳନ ପ୍ରତି ଆପଣଙ୍କର ମହନୀୟ ଅବଦାନପାଇଁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ୮୦ ତମ ପ୍ରତିଷ୍ଠା ବାର୍ଷିକୀ ସମାରୋହରେ ଉତ୍କଳ ରାଜ୍ୟପରିଷଦ ଆପଣଙ୍କୁ ସମ୍ବର୍ଦ୍ଧିତ କରୁଛି।

ସାଧାରଣ ସଂପାଦକ | ରାଜ୍ୟ ସଂପାଦକ

ତା. ୨୧.୧୨.୨୦୦୫, ସ୍ଥାନ : ଭଗବତୀ ଭବନ, ଭୁବନେଶ୍ୱର

# ଭାରତୀୟ କମ୍ୟୁନିଷ୍ଟ ପାର୍ଟି



## ୮୦ତମ ପ୍ରତିଷ୍ଠା ଜୟନ୍ତୀ ଅବସରରେ

ଗଂଜାମ ଜିଲ୍ଲା ସ୍ତରୀୟ ସମାବେଶ, ବ୍ରହ୍ମପୁର

ତା. ୨୦-୧୨-୨୦୦୫

## ମାନପତ୍ର

### ସାଥୀ ବିଶ୍ୱନାଥ ସାହୁ, ବଡକୁଶସ୍ଥଳୀ

ଆପଣ ଗଂଜାମ ଜିଲ୍ଲାର ସି.ପି.ଆଇ.ର ଜଣେ ସକ୍ରୀୟ ସଭ୍ୟ ଭାବେ ଶ୍ରମିକ, କୃଷକ ଓ ଶ୍ରମଜୀବୀ ଜନତାର ବଂଚିବା ପାଇଁ ଲଢେଇ ତଥା ଶ୍ରମିକ ଶ୍ରେଣୀର ମୁକ୍ତି ସଂଗ୍ରାମର ଅଗ୍ରଭାଗରେ ରହି ଦେଶ ଓ ସମାଜ ସେବାରେ ଯେଉଁ ଅମୂଲ୍ୟ ଯୋଗଦାନ ଦେଇଛନ୍ତି ତାହା ଅତ୍ୟନ୍ତ ପ୍ରସଂଶନୀୟ । ସେଥିପାଇଁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ୮୦ତମ ପ୍ରତିଷ୍ଠା ଜୟନ୍ତୀ ଅବସରରେ ପାର୍ଟି ଆପଣଙ୍କୁ କୃତଜ୍ଞତା ଜଣାଉଛି ।

ଆପଣ ସୁସ୍ଥ, ସତେଜ ଏବଂ କର୍ମଠ ରହିବା ସଙ୍ଗେ ସଙ୍ଗେ ଆଗାମୀ ସଂଗ୍ରାମର ଦିନ ମାନଙ୍କରେ ଅଧିକ ଉତ୍ସାହର ସହିତ ଆମ କାନ୍ଧରେ କାନ୍ଧ ମିଶାଇ ଜନ ଆନ୍ଦୋଳନକୁ ଦିଗ୍‌ଦର୍ଶନ ଦେବେ ବୋଲି କାମନା କରୁଛୁ ।

| | | |
|---|---|---|
| ଜିଲ୍ଲା ସଂପାଦକ | ରାଜ୍ୟ ସଂପାଦକ | ମୁଖ୍ୟ ଅତିଥୀ |



# ଭାରତୀୟ କମ୍ୟୁନିଷ୍ଟ ପାର୍ଟି

ଗଂଜାମ ଜିଲ୍ଲା ପରିଷଦ

## ସଂଗ୍ରାମୀ ଅଭିନନ୍ଦନ ପତ୍ର

ସାଥୀ ବିଶ୍ୱନାଥ ସାହୁ

ଏ ଦେଶର ସ୍ୱାଧୀନତା ତଥା ବର୍ବର ମୁସ୍ତାଦାରୀ ଓ ଜମିଦାରୀ ପ୍ରଥାର ବିଲୋପ କଲେ, ଗଂଜାମ ଜିଲ୍ଲାରେ ଗଢି ଉଠିଥିବା ଦୁର୍ବାର କୃଷୀ ଆନ୍ଦୋଳନରେ ଆପଣଙ୍କ ଅବଦାନ ଅବିସ୍ମରଣୀୟ ।

ଆଜି,, ଡାକରଡ଼ା ଗୁଳିକାଣ୍ଡ ଦିବସର ସୁବର୍ଣ୍ଣ ଜୟନ୍ତୀ ବର୍ଷ ଅବସରରେ, ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ଗଂଜାମ ଜିଲ୍ଲା ପରିଷଦ, ଆପଣଙ୍କ ତ୍ୟାଗନିଷ୍ଠ ସଂଗ୍ରାମୀ ଭୂମିକା ସ୍ମରଣ ପୂର୍ବକ କୃତଜ୍ଞତା ଜ୍ଞାପନ କରୁଛି ।

ଡାକରଡ଼ା
୮-୧୦-୯୭

ଅଭିନନ୍ଦନ ସହ

ସଂପାଦକ
ଉତ୍କଳ ରାଜ୍ୟ ପରିଷଦ

ସଂପାଦକ
ଗଂଜାମ ଜିଲ୍ଲା ପରିଷଦ

ସ୍ମୃତିରେ ...କମ୍ରେଡ୍ ବିଶ୍ୱନାଥ ସାହୁ




# DELEGATE



**Vishvanath Sahu**

**Orissa**

A.B. Bardhan
A.B. Bardhan
General Secretary





ସ୍ମୃତିରେ ...କମ୍ରେଡ୍ ବିଶ୍ୱନାଥ ସାହୁ

